# ଭୂମିପୁତ୍ର
# ବିଜୁ ପଟ୍ଟନାୟକ



ଲେଖକ :
ଶ୍ରୀ ଭଗୀରଥି ନେପାକ

# ଭୂମିପୁତ୍ର ବିଜୁ ପଟ୍ଟନାୟକ

ଲେଖକ :
ଭଗୀରଥି ନେପାକ
ନୂଆପଲ୍ଲୀ, ଭୁବନେଶ୍ୱର

ପ୍ରକାଶକ :
ଶ୍ରୀଜଗନ୍ନାଥ ସପ୍ଲାଇ ଏଜେନ୍‌ସି
ବାଙ୍କାବଜାର, କଟକ-୨

ମୁଖ୍ୟ ପରିବେଷକ :
କେ. କେ. ମିଶ୍ର ଏଣ୍ଡ୍ କୋ.
ଖଟ୍ଟବନ ସାହି, କଟକ-୮

ମୁଦ୍ରକ :
ମା' ସନ୍ତୋଷୀ ପ୍ରେସ୍
କାଜିବଜାର, କଟକ

ପ୍ରଥମ ପ୍ରକାଶ :
ନୂଆବର୍ଷ—୧୯୯୮

ମୂଲ୍ୟ :
ଆଠ ଟଙ୍କା ପଞ୍ଚସ୍ତରୀ ପଇସା
(ଟ. ୮.୭୫)

**BHUMI PUTRA**
**BIJU PATTNAIK**

Written by
**Bhagirathi Nepak**
Bhubaneswar

Published by :
**Shree Jagannath**
**Supply Agency**
Banka Bazar,
Cuttack-753002

First Publication :
**1st January : 1998**

Price : Rs. 8.75

କଳିଙ୍ଗର ବରପୁତ୍ର,

ଇଣ୍ଡୋନେସିଆର ଭୂମିପୁତ୍ର,

ଭାରତବର୍ଷର ଅପ୍ରତିଦ୍ୱନ୍ଦୀ ନେତା

ବିଜୁ ପଟ୍ଟନାୟକଙ୍କ ଅମର ଅତ୍ମା!

ଉଦ୍ଦେଶ୍ୟରେ............

...ଭକ୍ତି ପୁଷ୍ପର ଅର୍ଘ୍ୟ

ଏ କ୍ଷୁଦ୍ର ପୁସ୍ତିକା !

# ସୂଚୀକ୍ରମ



*

## ଜନନାୟକ ବିଜୁ ପଟ୍ଟନାୟକ : ଅନ୍ତିମ ସମ୍ବାଦ

କଟକରୁ ପ୍ରକାଶିତ ସମ୍ବାଦ ପତ୍ର (ସମାଜ) ର ୧୯୯୭ ମସିହା, ଅପ୍ରେଲ, ୧୮ ତାରିଖ ସଂସ୍କରଣର ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଲା, "ଭୁଙ୍ଗ ଜନନାୟକ ବିଜୁ ପଟ୍ଟନାୟକ ଆଉ ନାହାନ୍ତି ।"

ଏହି ସମ୍ବାଦ ପ୍ରଥମେ ଟେଲିଭିଜନ ଓ ରେଡ଼ିଓ ଯୋଗେ ପ୍ରସାରିତ ହୋଇ ସାରିଥିଲା । ଆବାଳ ବୃଦ୍ଧବନିତା ସର୍ବଶେଷ ବିବରଣୀ ଜାଣିବା ନିମନ୍ତେ ସମ୍ବାଦ ପତ୍ର ଅପେକ୍ଷାରେ ଥିଲେ ।

ସବୁଗୁଡ଼ିକ ସବୁ ସ୍ଥାନୀୟ ସମ୍ବାଦ ପତ୍ରମାନଙ୍କରେ ଜନନାୟକ ବିଜୁ ପଟ୍ଟନାୟକଙ୍କ ସର୍ବଶେଷ ସମ୍ବାଦ ଭରପୂର ଥିଲା ।

ନୂଆଦିଲ୍ଲୀ ଏଜେନ୍ସି ରିପୋର୍ଟ ୧୭ । ୪ । ୧୯୯୭ରେ କୁହା-ଯାଇଥିଲା, "ଭାରତୀୟ ରାଜନୀତିର ବହୁ ଚର୍ଚ୍ଚିତ ବ୍ୟକ୍ତିତ୍ୱ, ଜନତା ଦଳର ଭୁଙ୍ଗ ନେତା, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ପୂର୍ବତନ କେନ୍ଦ୍ର ମନ୍ତ୍ରୀ, ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଦୁର୍ଦ୍ଧର୍ଷ ପାଇଲଟ ତଥା ସାଂସଦ ଶ୍ରୀ ବିଜୁ ପଟ୍ଟନାୟକ ଆଉ ଇହଧାମରେ ନାହାନ୍ତି ।

ଗର୍ଭ ସପ୍ତାହର ଦିନକାଳ ଗୁରୁତର ଅସୁସ୍ଥ ରହି ଜୀବନ ସହ ସଂଗ୍ରାମ କରିବା ପରେ, ଆଜ ସକାଳ ୭ଟା ୨୫ ମିନିଟରେ ଏହି ମହାନାୟକଙ୍କର ଏଠା ଏସ୍କର୍ଟ ହାସପାତାଲ୍‌ରେ ମହାପ୍ରୟାଣ ହୋଇଯାଇଛି । ମୃତ୍ୟୁବେଳକୁ ତାଙ୍କୁ ୮୧ ବର୍ଷ ବୟସ ହୋଇ-ଥିଲା ।"

ଶ୍ରୀ ପଟ୍ଟନାୟକ ଶେଷ ନିଃଶ୍ୱାସ ତ୍ୟାଗ କଲାବେଳେ ତାଙ୍କର ଧର୍ମପତ୍ନୀ ଜ୍ଞାନ ପଟ୍ଟନାୟକ, କନ୍ୟା ଶ୍ରୀମତୀ ଗୀତା ମେହେଟା, ଦୁଇ

ପୁତ୍ର ନବୀନ ଓ ପ୍ରେମଙ୍କ ସମେତ କେତେକ ଦଳୀୟ ନେତା ଓ ଶୁଭେଚ୍ଛୁ ବନ୍ଧୁ ଉପସ୍ଥିତ ଥିଲେ ।

ଶ୍ରୀ ପଟ୍ଟନାୟକ ଭୁବନେଶ୍ୱରରେ ଜନତା ଦଳ ରାଜ୍ୟ ଶାଖାର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକରେ ଯୋଗଦେଇ ଦିଲ୍ଲୀ ଫେରିବା ପରେ ହଠାତ୍ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କୁ ୨୯ ତାରିଖ ଦିନ ରାମ୍ ମନୋହର ଲୋହିଆ ହାସପାତାଲ୍‌ରେ ଚିକିତ୍ସା ପାଇଁ ଭର୍ତ୍ତି କରାଯାଇଥିଲା । ସେଠାରେ ତାଙ୍କର ସ୍ୱାସ୍ଥ୍ୟାବସ୍ଥା ଆହୁରି ଗୁରୁତର ହେବାରୁ ତାଙ୍କୁ ଦିଲ୍ଲୀର ପ୍ରସିଦ୍ଧ ହୃଦ୍ ଚିକିତ୍ସା କେନ୍ଦ୍ର ଏସ୍କର୍ଟ ହାସ୍‌ପାତାଲକୁ ସ୍ଥାନାନ୍ତର କରାଯାଇଥିଲା । ସେଠାରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ମୃତ୍ୟୁ ସହ ସଂଗ୍ରାମ କରି ଚାଲିଥିଲେ ।

ଏହି କର୍ମବୀର ପୁରୁଷଙ୍କ ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ପ୍ରଧାନ ମନ୍ତ୍ରୀ ଶ୍ରୀ ଏଚ୍. ଡି. ଦେବେଗୌଡ଼ା, ପୂର୍ବତନ ପ୍ରଧାନ ମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଏବଂ ପି. ଭି. ନରସିଂହ ରାଓ, କେନ୍ଦ୍ରମନ୍ତ୍ରୀ ଶ୍ରୀକାନ୍ତ ଜେନା ଓ ଶ୍ରୀ ଦିଲ୍ଲୀପ ରାୟ, ଜନତା ଦଳ କାର୍ଯ୍ୟାଧକ୍ଷ ଶ୍ରୀ ଶରଦ୍ ଯାଦବ, କଂଗ୍ରେସ ସଂସଦୀୟ ନେତା ଶ୍ରୀ ଶରଦ ପାୱାର୍, ଓଡ଼ିଶାର ସାଂସଦ ଓ ନେତାମାନେ ତଥା ଅନ୍ୟାନ୍ୟ ବହୁ ଶୁଭେଚ୍ଛୁ, ଜ୍ଞାତି, ପରିଜନ ଏସ୍କର୍ଟ ହାସପାତାଲକୁ ଯାଇ ଶେଷ ଦର୍ଶନ କରିଥିଲେ ।

'କଳିଙ୍ଗର ମୁକୁଟ ବିହୀନ ସମ୍ରାଟ୍' ନାମରେ ପରିଚିତ ଶ୍ରୀ ବିଜୁ ପଟ୍ଟନାୟକଙ୍କ ମରଶରୀରକୁ ୧ ତୋଘଲକ୍ ରୋଡ଼୍ ବାସ ଭବନରେ ସେଦିନ ଗୋଟାଏ ବେଳୁ ସର୍ବ ସାଧାରଣଙ୍କ ଦର୍ଶନ ନିମନ୍ତେ ରଖାଯାଇଥିଲା ।

ଭାରତୀୟ ବିମାନ ବାହିନୀର ଏକ ସ୍ୱତନ୍ତ୍ର ବିମାନ ଯୋଗେ ତାଙ୍କ ମର ଶରୀରକୁ ତା ପରଦିନ (୧୮।୪।୧୯୯୭) ସକାଳ ସାଢ଼େ ୭ଟା ବେଳେ ଭୁବନେଶ୍ୱର ନିଆଯାଇ ପୁରୀ ସ୍ୱର୍ଗଦ୍ୱାର ଠାରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ କରାଯାଇଥିଲା ।

ଶ୍ୱାସକ୍ରିୟାରେ ସମସ୍ୟା ସୃଷ୍ଟି ହେବା ପରେ ଶ୍ରୀ ପଟ୍ଟନାୟକଙ୍କୁ ଏକ ଭେଣ୍ଟିଲେଟର ସାହାଯ୍ୟରେ ତାଙ୍କର ଶ୍ୱାସକ୍ରିୟାକୁ ସ୍ୱାଭାବିକ କରିବା ପାଇଁ ଚେଷ୍ଟା ହୋଇଥିଲା; କିନ୍ତୁ ପୂର୍ବରୁ ସେ ନିମୋନିଆରେ ପୀଡ଼ିତ ହୋଇ ପଡ଼ିଥିଲେ । ପରେ ତାଙ୍କର ଲିଭର୍ ମଧ୍ୟ ଖରାପ ହେବାକୁ ଆରମ୍ଭ କରିଥିଲା ।

ପ୍ରକାଶ ଥାଉକି, ଶ୍ରୀ ପଟ୍ଟନାୟକଙ୍କ ୧୫ ବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାରେ ଓପନ ହାର୍ଟ ସର୍ଜରୀ ହୋଇଥିଲା । ତଥାପି ଡାକ୍ତରମାନଙ୍କ ନିଷ୍ଠାପର ଉଦ୍ୟମ ସତ୍ତ୍ୱେ ୧୭ ଅପ୍ରେଲ, ଗୁରୁବାର ଦିନ ତାଙ୍କର ଶ୍ୱାସକ୍ରିୟା ବନ୍ଦ ହୋଇଯାଇଥିଲା ।

ଶ୍ରୀ ପଟ୍ଟନାୟକଙ୍କ ମର ଶରୀର ଭୁବନେଶ୍ୱରରେ ପହଞ୍ଚିବା ପରେ, ତାଙ୍କ ଏରୋଡ୍ରମ ନିକଟସ୍ଥ ବାସ ଭବନ 'ନବୀନ ନିବାସ'ରେ ସାଧାରଣ ଲୋକମାନେ ଶ୍ରଦ୍ଧାଞ୍ଜଳି ଜଣାଇବା ଉଦ୍ଦେଶ୍ୟରେ ରହିଥିଲା । ଅପରାହ୍ଣ ୩ଟାରେ ମର ଶରୀରକୁ ପୁରୀ ନିଆଯାଇ ସେଠାରେ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ପ୍ରିୟ ନେତାଙ୍କୁ ଶେଷ ସମ୍ମାନ ପ୍ରଦର୍ଶନ କରାଯାଇ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କରାଯାଇଥିଲା ।

ବିଜୁବାବୁଙ୍କ ଦେହାନ୍ତ କାରଣରୁ ସେଦିନ ସେଠାରେ (ନୂଆ-ଦିଲ୍ଲୀ) ଅନୁଷ୍ଠିତ ହେବାକୁ ଥିବା ମିଳିତ ସାମ୍ମୁଖ୍ୟର ନୂତନ ନେତା ନିର୍ବାଚନ କାର୍ଯ୍ୟକ୍ରମକୁ ତା ପରଦିନ ପାଇଁ ସ୍ଥଗିତ ରଖାଯାଇଥିଲା । ଉକ୍ତ ଦିନ ସାମ୍ମୁଖ୍ୟ ସଞ୍ଚାଳନ କମିଟି ବୈଠକରେ ବିଜୁବାବୁଙ୍କ ବିୟୋଗରେ ଶୋକ ପ୍ରକାଶ କରାଯାଇଥିଲା ।

# ବିଜୁବାବୁଙ୍କ ଜୀବନ ଓ ଜୀବନୀ

'କଳିଙ୍ଗର ମୁକୁଟ ବିହୀନ ସମ୍ରାଟ' ରୂପେ ପରିଚିତ ବିଜୟାନନ୍ଦ ପଟ୍ଟନାୟକ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖ ଦିନ କଟକ ଠାରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ।

ବିଜୟାନନ୍ଦ ପଟ୍ଟନାୟକ ସର୍ବତ୍ର ବିଜୁ ପଟ୍ଟନାୟକ ଭାବରେ ସୁପରିଚିତ ଥିଲେ । ସେ ଥିଲେ ଏକାଧାରରେ ପ୍ରିୟ ଜନନେତା, ପ୍ରବୀଣ ରାଷ୍ଟ୍ରନୀତିଜ୍ଞ, ପରୋପକାରୀ, ସ୍ପଷ୍ଟବାଦୀ, ସାହସୀ, ହୃଦୟବାନ୍, ଭାରତ ମାତାର ସୁଯୋଗ୍ୟ ସନ୍ତାନ, ଉତ୍କଳବାସୀଙ୍କ ପ୍ରିୟ ନେତା । ସର୍ବ ଭାରତୀୟ ସ୍ତରରେ ମାତୃଭୂମି ଉତ୍କଳର ସମ୍ମାନ ଓ ବୈଶିଷ୍ଟ୍ୟ ବଜାୟ ରଖିବା ସକାଶେ ସେ ସଦା ସଚେଷ୍ଟ ଥିଲେ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ଗଠନରେ ତାଙ୍କର ବଳିଷ୍ଠ ଭୂମିକା ବହୁକାଳ ଧରି ଆଗାମୀ ସମୟକୁ ପ୍ରଭାବିତ କରିବ । ବିଶେଷ ସ୍ୱାଭିମାନର ଅଧିକାରୀ ବିଜୁ ପଟ୍ଟନାୟକଙ୍କୁ 'କଳିଙ୍ଗ ବନ୍ଧୁ' କୁହାଯାଇଥାଏ ଏବଂ ଓଡ଼ିଆ ଜାତିର ଚଳମାନ ବିଗ୍ରହ ବୀର ଖାରବେଳ ତାଙ୍କର ଆଦର୍ଶ ଥିଲେ ।

ବିଜୁ ପଟ୍ଟନାୟକଙ୍କର ପିତାଙ୍କ ନାମ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ଓ ମାତାଙ୍କ ନାମ ଆଶାଲତା ରାୟ ।

ପିତା ନ୍ୟାୟ ମୂର୍ତ୍ତି ଏବଂ ସାହିତ୍ୟ ପ୍ରେମୀ ଥିଲେ । ତାଙ୍କର କଠୋର ଶୃଙ୍ଖଳାରେ ଶିକ୍ଷିତ ହୋଇ ସେ ଅଦମିତ ଉତ୍ସାହ ଓ ସାହସର ଅଧିକାରୀ ହୋଇ ଜୀବନ ସମସ୍ୟାର ସମ୍ମୁଖୀନ ହୋଇ

ଥିଲେ । ଜୀବନରେ ବିଜୁ ପରାଜୟକୁ ସ୍ୱୀକାର ନ କରି ବିଜୟ ହାସଲ ପାଇଁ ସଂଗ୍ରାମ କରି ଚାଲିଥିଲେ ।

ସ୍ୱାଧୀନତ୍ୟାନୁରାଗୀ ପିତାଙ୍କ ନେତୃତ୍ୱରେ ପରିଚାଳିତ 'ସାହିତ୍ୟ ପ୍ରଚାର ସଂଘ'ର ଜଣେ ସକ୍ରିୟ କର୍ମୀ ରୂପେ ବିଜୁ ପରିଚିତ ଥିଲେ । ତାରୁଣ୍ୟରେ ସାଇକେଲ ଚଢ଼ି ଉତ୍ତର ଭାରତ ଭ୍ରମଣର କାହାଣୀ ଲେଖୁଥିଲେ ଓ ତାହା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା ।

ବିଜୁ ପଟ୍ଟନାୟକ ଥିଲେ ବହୁମୁଖୀ ରଙ୍ଗୀନ ବ୍ୟକ୍ତିତ୍ୱର ଅଧିକାରୀ । 'ଅସମ୍ଭବ' ଶବ୍ଦ ତାଙ୍କ ଅଭିଧାନରେ ସ୍ଥାନ ପାଇ ନ ଥିଲା ।

### ଇଂରେଜ ଶାସକଙ୍କ ବିରୋଧରେ ପ୍ରତିଶୋଧ ଶପଥ

ବିଜୁ ପଟ୍ଟନାୟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଢ଼ିଲାବେଳେ ପାଖ ସ୍ୱରାଜ ଆଶ୍ରମକୁ ଗାନ୍ଧିଜୀ ଆସିଥିଲେ । ବିଜୁ ସାଙ୍ଗ ମେଳରେ ଗାନ୍ଧିଜୀଙ୍କୁ ଦେଖିବାକୁ ଯାଇଥିଲେ । ଢ଼େଙ୍ଗା ବିଜୁ ବାବୁଙ୍କ ମୁଣ୍ଡରେ ଗୋରା ପୋଲିସ୍ ଏସ୍.ପି.ଙ୍କର ଠେଙ୍ଗା ମାଡ଼ ବାଜି କଣା ହୋଇ ଯାଇଥିଲା । ମୁଣ୍ଡରୁ ରକ୍ତ ପୋଛି ବିଜୁ ସେହି ମୁହୂର୍ତ୍ତରେ ଇଂରେଜ ଶାସକଙ୍କ ବିରୋଧରେ ପ୍ରତିଶୋଧ ନେବା ପାଇଁ ଶପଥ ଗ୍ରହଣ କରିଥିଲେ ।

### ପାଇଲଟ୍ ହେବା ପାଇଁ ପ୍ରତିଜ୍ଞା

ଆଉ ଥରେ କଟକ କିଲ୍ଲା ପଡ଼ିଆକୁ ପ୍ରଥମ କରି ଆସିଥିବା ଏକ ଉଡ଼ାଜାହାଜ ଦେଖିବାକୁ ଯାଇ ବିଜୁ ଉଡ଼ାଜାହାଜର ଡେଣାକୁ ଟିକିଏ ଛୁଇଁ ଦେଇଥିବା ହେତୁ ପୋଲିସବାଲାଙ୍କ ହାତରୁ

ଗୁରୁଙ୍କ ମାଡ଼ ଖାଇଥିଲେ । ଏହାପରେ ସେ ପ୍ରତିଜ୍ଞା କରିଥିଲେ ଯେ, ପାଇଲଟ୍ ହୋଇ ନିଜେ ଉଡ଼ାଜାହାଜ ଚଳାଇବେ ।

ପରବର୍ତ୍ତୀ କାଳରେ ବିଜୁ କେବଳ ଜଣେ ପାଇଲଟ୍ ହୋଇ ନ ଥିଲେ, ନିଜର ଦୁଃସାହସିକତାର ପରିଚୟ ଦେବାକୁ ଯାଇ ସ୍ୱାଧୀନତା ସଂଗ୍ରାମ ବେଳେ ଭାରତର ବଡ଼ ବଡ଼ ନେତାଙ୍କୁ ଗୋପନରେ ବିଭିନ୍ନ ସ୍ଥାନକୁ ନେବା ଆଣିବା ସହ 'ଡଚ୍' ଶାସକଙ୍କ କବଳରୁ ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମ ବେଳେ ସେଠାକାର ଭୂଗ ନେତାଙ୍କୁ ନିଜ ଡ଼ାକୋଟାରେ ଉଦ୍ଧାର କରିଥିଲେ । ପ୍ରତି-ଦାନରେ ଇଣ୍ଡୋନେସିଆ ସରକାର ତାଙ୍କୁ 'ଭୂମି ପୁତ୍ର' ଭାବରେ ସମ୍ମାନିତ କରିଥିଲେ । ଇଣ୍ଡୋନେସିଆର ପ୍ରଥମ ରାଷ୍ଟ୍ରପତି ସୁକର୍ଣ୍ଣ ଓ ତାଙ୍କ ପରିବାରର ସଦସ୍ୟମାନଙ୍କ ସହ ବିଜୁବାବୁଙ୍କର ଘନିଷ୍ଠ ଆତ୍ମୀୟତା ଥିଲା ।

କଟକ ସହରର ରେଭେନ୍ସା କଲେଜରେ ପାଠ ପଢ଼ିଲା ବେଳେ ବିଜୁ ପଟ୍ଟନାୟକ ଲଗାତାର ତିନିଥର ଆଥଲେଟିକ୍ ଚମ୍ପିଆନ ହୋଇଥିଲେ । ସେ ବି. ଏସ୍‌ସି. ପଢ଼ିଲାବେଳେ ଚାଲି ଯାଇଥିଲେ ପାଇଲଟ୍ ଟ୍ରେନିଂ ପାଇଁ । ତାଙ୍କ ପାଖରେ ବିଶ୍ୱ-ବିଦ୍ୟାଳୟର କୌଣସି ଉଚ୍ଚତର ଡିଗ୍ରୀ ନ ଥିଲା ସତ, କିନ୍ତୁ ଯେକୌଣସି ବିଷୟରେ ତାଙ୍କର ଜ୍ଞାନ ଓ ବିଚକ୍ଷଣତାର ସୀମା ନଥିଲା ।

# ରାଜନୈତିକ ଜୀବନ

ରାଜନୀତିର ଉତ୍‌ଥାନ ପତନ, ଜୟ ପରାଜୟ ଓ ସୁଦିନ ଦୁର୍ଦ୍ଦିନ ମଧ୍ୟରେ ବିଜୁବାବୁ ସର୍ବଦା ଜଡ଼ିତ ଥିଲେ ।

୧୯୪୨ ମସିହାରେ ବିଜୁବାବୁ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ ଓ ଅରୁଣା ଆସଫ୍ ଅଲ୍ଲୀଙ୍କ ପରି ଜାତୀୟ ନେତାମାନଙ୍କ ସଂସ୍ପର୍ଶରେ ଆସି ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତେଣୁ ୧୯୪୩ ମସିହା ଜାନୁଆରୀ ୧୩ ତାରିଖରେ ତାଙ୍କୁ ପ୍ରଥମେ ଦିଲ୍ଲୀରେ ଗିରଫ କରାଯାଇଥିଲା ।

୧୯୪୬ ମସିହାରେ ବିଜୁବାବୁ କଟକରୁ ପ୍ରାଦେଶିକ ବ୍ୟବସ୍ଥାପିକାକୁ ନିର୍ବାଚିତ ହୋଇଥିଲେ, ଏହାଦ୍ୱାରା ତାଙ୍କ ରାଜନୈତିକ ଜୀବନର ମୂଳଦୁଆ ପଡ଼ିଥିଲା ।

ସ୍ୱାଧୀନତା ଲାଭ ପରେ ୧୯୫୨ ମସିହାରେ ଭଞ୍ଜନଗର ନିର୍ବାଚନ ମଣ୍ଡଳୀ ଓ ୧୯୫୭ ମସିହାରେ ଜଗନ୍ନାଥ ପ୍ରସାଦ ନିର୍ବାଚନ ମଣ୍ଡଳୀରୁ ଜିଣିବା ପରେ ୧୯୬୧ ମସିହାରେ ସେ କଂଗ୍ରେସର ନେତୃତ୍ୱ ଗ୍ରହଣ କରିଥିଲେ । ୧୯୬୧ ମସିହାରେ ସେ ଚୌଦ୍ୱାରରୁ ନିଜେ ଜୟଲାଭ କରିବା ସହ କଂଗ୍ରେସ ଦଳକୁ ୮୨ଟି ଆସନରେ ଜିଣାଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଆସୀନ ହୋଇଥିଲେ ।

ଅମଡ଼ା ବାଟରେ ନୂଆବାଟ ଫିଟାଇ ଚାଲିବା ଥିଲା ବିଜୁବାବୁଙ୍କର ନେତୃତ୍ୱର ଏକ ବଳିଷ୍ଠ ଦିଗ ।

କେନ୍ଦ୍ରର ଅନୁମୋଦନକୁ ଅପେକ୍ଷା ନ ରଖି, ରାଜ୍ୟର କଣ୍ଟି-ଜେନ୍‌ସି ପାଣ୍ଠିରୁ ଟଙ୍କା ଖର୍ଚ୍ଚ କରି ପାରାଦ୍ୱୀପଠାରେ ସେ ବନ୍ଦର

ପ୍ରତିଷ୍ଠା କରିଥିଲେ ଓ ଦୈତାରୀର ଖଣି ଅଞ୍ଚଳରୁ ବନ୍ଦରକୁ ରପ୍ତାନି ଯୋଗ୍ୟ ଖଣିଜ ସାମଗ୍ରୀ ପରିବହନ ପାଇଁ ଦୈତାରୀ— ପାରାଦ୍ୱୀପ ଏକ୍ସପ୍ରେସ୍ ସଡ଼କ ନିର୍ମାଣ କରିଥିଲେ । ଏହା ଥିଲା ତାଙ୍କର ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ ସମୟର ସର୍ବଶ୍ରେଷ୍ଠ ଅବଦାନ ।

ଭୁବନେଶ୍ୱରରେ କୃଷି ଓ ବୈଷୟିକ ବିଶ୍ୱ ବିଦ୍ୟାଳୟ, ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଆଞ୍ଚଳିକ ଗବେଷଣାଗାର, ସୈନିକ ସ୍କୁଲ, ରାଉରକେଲାରେ ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ, ସୁନାବେଡ଼ାଠାରେ ମିଗ୍ ବିମାନ କାରଖାନା ଆଦି ପ୍ରତିଷ୍ଠା କରି ସେ ତାଙ୍କର ୨୭ ମାସର ମୁଖ୍ୟମନ୍ତ୍ରୀତ୍ୱ କାଳରେ ରେକର୍ଡ ସୃଷ୍ଟି କରିଥିଲେ । ଏହା ଥିଲା ଓଡ଼ିଶା ପାଇଁ ଏକ ନିର୍ମାଣ ଯୁଗ ।

୧୯୬୧ ମସିହାରେ ମହାନଦୀର ପ୍ରଳୟଙ୍କରୀ ବନ୍ୟା ବେଳେ ଇଂଜିନିୟରମାନଙ୍କ ପ୍ରତିବାଦକୁ ଉପେକ୍ଷା କରି ହୀରାକୁଦ ବନ୍ଧରେ ବନ୍ୟା ଜଳକୁ ଚୂଡ଼ାନ୍ତ ସୀମା ପର୍ଯ୍ୟନ୍ତ ଅଟକାଇ ରଖିବାକୁ ନିର୍ଦ୍ଦେଶ ଦେଇ, ସେତେବେଳର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତଳ ଅଞ୍ଚଳର ଲୋକଙ୍କୁ ବନ୍ୟାର ପ୍ରକୋପରୁ ରକ୍ଷା କରିବାରେ ସମର୍ଥ ହୋଇଥିଲେ ।

## ଭୁବନେଶ୍ୱରରେ ଏ. ଆଇ. ସି. ସି. ର ସାଧାରଣ ଅଧିବେଶନ

କାମରାଜ ଯୋଜନା ଅନୁଯାୟୀ ୧୯୬୩ରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ପରବର୍ତ୍ତୀ ବର୍ଷ ଅର୍ଥାତ୍ ୧୯୬୪ ମସିହାରେ ଭୁବନେଶ୍ୱରଠାରେ ସେ ଏ. ଆଇ. ସି. ସି. ର ସାଧାରଣ ଅଧିବେଶନ ଆୟୋଜନ କରିଥିଲେ । ଫଳରେ ଜାତୀୟ ରାଜନୀତିରେ ଓଡ଼ିଶାର ଗୁରୁତ୍ୱ ବୃଦ୍ଧି ଲାଭ କରିଥିଲା ।

କଂଗ୍ରେସ ବିଭାଜିତ ହେବା ପରେ ମଧ୍ୟ ଏ. ଆଇ. ସି. ସି. ର କୌଣସି ଅଧିବେଶନ ଭୁବନେଶ୍ୱରରେ ଡାକିବା ରାଜ୍ୟର କୌଣସି ନେତାଙ୍କ ପକ୍ଷରେ ଏ ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ ।

**ରାଜନୀତିରେ ହାଟ୍ରିକ୍**

୧୯୬୭ରେ ବିଜୁବାବୁ ପାଟକୁରା ନିର୍ବାଚନ ମଣ୍ଡଳୀରେ ଛିଡ଼ା-ହୋଇ ପରାଜିତ ହୋଇଥିଲେ ହେଁ ୧୯୬୮ ମସିହାରେ ରାଜ୍ୟ ସଭାକୁ ନିର୍ବାଚିତ ହୋଇଥିଲେ ।

ସେହିପରି ୧୯୭୧ ମସିହାରେ ଏକାଥରକେ ୪ଟି ବିଧାନ ସଭା ଓ ଗୋଟିଏ ଲୋକ ସଭା ନିର୍ବାଚନରେ ହାରି ପରାଜୟର ରେକର୍ଡ ସୃଷ୍ଟି କରିଥିବା ବିଜୁବାବୁ ସେହିବର୍ଷ ପୁଣି ରାଜନଗରରୁ ବିପୁଳ ଭୋଟରେ ଉପ-ନିର୍ବାଚନ ଜିଣିଥିଲେ ।

ମୁଦ୍ରାର ଦୁଇପାଖ ଭଳି ହାରଜିତ୍‌କୁ ସେ ସମାନ ଭାବରେ ଗ୍ରହଣ କରି ନେଇଥିଲେ ।

୧୯୭୪ର ପାଟକୁରାରୁ ଜିଣି ବିଧାନ ସଭାରେ ବିରୋଧୀ ଦଳର ନେତା ହୋଇଥିବା ବିଜୁବାବୁ ୧୯୭୫ ମସିହା ଜୁନ୍ ମାସ ୨୬ ତାରିଖ ରାତ୍ରରେ ଦେଶରେ ଜରୁରୀ ପରିସ୍ଥିତି ଘୋଷଣା ହେବା ମାତ୍ରେ 'ମିସା'ରେ ଗିରଫ ହୋଇଥିଲେ ।

**କେନ୍ଦ୍ରରେ ଖଣି ଓ ଇସ୍‌ପାତ ମନ୍ତ୍ରୀ**

୧୯୭୭ ମସିହାରେ ବିଜୁବାବୁ କେନ୍ଦ୍ରାପଡ଼ା ଲୋକ ସଭା ଆସନରୁ ଜିଣି କେନ୍ଦ୍ରରେ ଖଣି ଓ ଇସ୍‌ପାତ ବିଭାଗର କ୍ୟାବିନେଟ ମନ୍ତ୍ରୀ ହୋଇଥିଲେ । ତାଙ୍କର ଉଦ୍ୟମରେ ଓଡ଼ିଶାରେ ବୃହତ୍ତ ଆଲୁମିନା ଆଲୁମିନିୟମ୍ ପ୍ରକଳ୍ପ 'ନାଲ୍‌କୋ' ଜନ୍ମ ନେଇଥିଲା ।

**କେନ୍ଦ୍ରରେ ଜନତା ସରକାର ଭାଙ୍ଗିଯିବା ପରେ**

୧୯୭୭ ମସିହାରେ କେନ୍ଦ୍ରରେ ଗଠିତ ଜନତା ସରକାର ଭାଙ୍ଗିଯିବା ପରେ ୧୯୮୦ ଓ ୧୯୮୫ ମସିହାରେ ବିଜୁବାବୁ ଓଡ଼ିଶାର ଜନତା ଦଳରୁ ଏକାକୀ କେନ୍ଦ୍ରାପଡ଼ା ଆସନରୁ ଲୋକ ସଭାକୁ ନିର୍ବାଚିତ ହୋଇଥିଲେ ।

୧୯୮୫ ମସିହାରେ ବିଜୁବାବୁ ଭୁବନେଶ୍ୱର ବିଧାନ ସଭାକୁ ଜିତିବା ପରେ ଲୋକ ସଭାରୁ ଇସ୍ତଫା ଦେଇ ପୁଣି ଥରେ ବିରୋଧୀ ଦଳ ନେତା ଆସନରେ ଆସୀନ ହୋଇଥିଲେ । ଏତଦ୍ଦ୍ୱାରା ସେ ଓଡ଼ିଶାର ବିରୋଧୀ ଦଳ ରାଜନୀତିକୁ ଗତିଶୀଳ କରାଇ ପାରିଥିଲେ । ଫଳରେ ୧୯୯୦ ନିର୍ବାଚନରେ ବିଧାନ ସଭାର ୧୪୭ଟି ଆସନ ମଧ୍ୟରୁ ୧୨୩ଟି ଆସନ ଜିତିବାର ଅଭୂତପୂର୍ବ ସଫଳତା ଲାଭ କଲେ । ଏହାପରେ ବିଜୁବାବୁ ୨୭ ବର୍ଷର ବ୍ୟବଧାନ ପରେ ପୁନର୍ବାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ଓଡ଼ିଶାର ଶାସନ ଡୋରିକୁ ହାତକୁ ନେଇଥିଲେ ଏବଂ ସମସ୍ତ ଉତ୍କଳ ବାସୀଙ୍କ ମନସ୍କାମନାକୁ ପୂର୍ତ୍ତି କରିଥିଲେ ।

## ପରିଣତ ବୟସରେ ବିଜୁ ପଟ୍ଟନାୟକ

୧୯୯୦ ମସିହା ବେଳକୁ ବିଜୁ ପଟ୍ଟନାୟକ ପରିଣତ ବୟସରେ ଉପନୀତ ହୋଇ ସାରିଥିଲେ । ତଥାପି ଓଡ଼ିଶାର ସାଧାରଣ ନିର୍ବାଚନରେ ମୁଖ୍ୟ ଭୂମିକା ଗ୍ରହଣ କରି ସାରା ଓଡ଼ିଶା ବୁଲି ଜନତା ଦଳର କାର୍ଯ୍ୟକ୍ରମ ପ୍ରଚାର କରି ବିଧାନ ସଭାର ୧୪୭ଟି ଆସନରୁ ୧୨୩ଟି ଆସନ ଲାଭ କରି ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିଥିଲେ ।

ପରିଣତ ବୟସରେ ମଧ୍ୟ ଧୈର୍ଯ୍ୟହରା ନ ହୋଇ ଓଡ଼ିଶାର ବିକାଶ ପାଇଁ ସେ ପ୍ରାଣପଣେ ଲାଗି ପଡ଼ିଥିଲେ । ସେ ଶସ୍ତା ଲୋକପ୍ରିୟତା ପାଇଁ ଆଗ୍ରହୀ ନ ହୋଇ କେତେକ କଠୋର ନିଷ୍ପତ୍ତି ଗ୍ରହଣ କରିଥିଲେ । ତନ୍ମଧ୍ୟରୁ କେତୋଟି ମୁଖ୍ୟ ବିଷୟ ହେଲା— ।

- ପେଟ୍ରୋଲ ଖର୍ଚ୍ଚ ପାଇଁ ସରକାରୀ ଗାଡ଼ିରେ କଟକଣା ।
- ସରକାରୀ କର୍ମଚାରୀ ଅବସର ଗ୍ରହଣ ପରେ ସରକାରୀ କ୍ୱାର୍ଟର ଖାଲି କରିବା ଓ ଛୁଟି ଦରମା ବନ୍ଦ କରିବା ।
- ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କ ବିରୋଧରେ ଅଭିଯାନ ।

ତାଙ୍କର ଏହିଭଳି କଠୋର ନୀତି ଦେଖି ସଚିବାଳୟ କର୍ମଚାରୀମାନେ କ୍ଷୁବ୍ଧ ହୋଇଥିଲେ ଓ କେତେଜଣ ଉତ୍ତ୍ୟକ୍ତ କର୍ମଚାରୀ ତାଙ୍କୁ ମାଡ଼ ମାରିବାକୁ ଉଦ୍ୟମ କରିଥିଲେ, କିନ୍ତୁ ବିଜୁବାବୁ ଖେଳଓ୍ୱାଡ଼ ମନୋବୃତ୍ତି ନେଇ କର୍ମଚାରୀମାନଙ୍କୁ କ୍ଷମା ପ୍ରଦାନ କରିଥିଲେ ଓ ସବୁ କଥା ଭୁଲି ଯାଇଥିଲେ ।

ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଗରିବ ଲୋକଙ୍କ ମଙ୍ଗଳ ପାଇଁ ସର୍ବନିମ୍ନ ମଜୁରୀକୁ ଏଗାର ଟଙ୍କାରୁ ଏକାଥରକେ ୨୫ ଟଙ୍କାକୁ ବଢ଼ାଇ ଦେଇଥିଲେ ।

ସେ ଜନ୍ମବୃଦ୍ଧିଷ୍ଟ ଲୋକସଂଖ୍ୟାକୁ ଦେଶର ସବୁଠାରୁ ବଡ଼ ସମସ୍ୟା ଭାବରେ ବିଚାର କରି ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ ।

ସେ ଅନୁଭବ କରିଥିଲେ ଯେ, ମଦ୍ୟପାନ ହିଁ ଗରିବ ଲୋକଙ୍କର ସର୍ବନାଶର କାରଣ । ଏହା ଲୋକମାନଙ୍କୁ ପଶୁରେ ପରିଣତ କରିଥାଏ ଓ ସ୍ୱଚ୍ଛଳ ଲୋକଙ୍କୁ ମଧ୍ୟ ଦାରିଦ୍ର୍ୟ ଭିକାରି କରିଥାଏ । ଗ୍ରାମାଞ୍ଚଳର ଅଶିକ୍ଷିତ ଆଦିବାସୀ ଲୋକମାନେ ଏଥିରେ ସର୍ବସ୍ୱାନ୍ତ ହୋଇପଡ଼ିଥାନ୍ତି । ସେଥିପାଇଁ ମଦ ବିରୋଧରେ ଅଭିଯାନ ଚଳାଇବା ନିମନ୍ତେ ସେ ଗ୍ରାମାଞ୍ଚଳର ଆଦିବାସୀ ମହିଳା-ମାନଙ୍କୁ ଉତ୍ସାହିତ କରିଥିଲେ ଓ ସେମାନଙ୍କୁ ପୁଲିସର କ୍ଷମତା ପ୍ରଦାନ କରିଥିଲେ ।

ଅବକାରୀ ନୀତିରେ ଦେଶୀ ମଦ ପ୍ରଚଳନକୁ ଚିର୍ ବନ୍ଦ କରିବା ସହ ସମାଜରେ ଦେଖା ଦେଇଥିବା ଯୌତୁକ ବ୍ୟାଧିର ନିରାକରଣ ନିମନ୍ତେ 'ଶାଶୁ ହାତକଡ଼ି ନେଇ ବେଡ଼ି' ପାଇଁ ଆହ୍ୱାନ ଦେଇ-ଥିଲେ ।

ଇସ୍ପାତ କାରଖାନା ଓ ବିଦ୍ୟୁତ ଉତ୍ପାଦନକୁ ବିଜୁବାବୁ ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ବେଳେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରି ସେଥି ନିମନ୍ତେ ଭୂମିର ବିକାଶ କରାଇ ଥିଲେ ।

**ନିନ୍ଦା ପ୍ରଶଂସା: ମୁଦ୍ରାର ଦୁଇପଟ**

ରାଜନୀତିର ଜୁଆର ଭଟ୍ଟାରେ ୧୯୯୫ ମସିହା ନିର୍ବାଚନରେ ଜନତା ଦଳ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ବିଜୁବାବୁ ତୃତୀୟ ଥର ପାଇଁ ଓଡ଼ିଶା ବିଧାନ ସଭାର ବିରୋଧୀ ଦଳର ନେତା ହେଲେ ।

୧୯୯୭ ମସିହାରେ ବିଜୁବାବୁ କଟକ ଓ ଆସିକା ନିର୍ବାଚନ ମଣ୍ଡଳୀରୁ ଲୋକ ସଭାକୁ ନିର୍ବାଚିତ ହେବା ପରେ କଟକ ଲୋକ ସଭା ଆସନ ଓ ଭୁବନେଶ୍ୱର ବିଧାନ ସଭା ଆସନରୁ ଇସ୍ତଫା ଦେଇ, ଆସିକାର ସାଂସଦ ଭାବରେ ଦିଲ୍ଲୀ ଗଲେ । ତାଙ୍କ ଅନୁପସ୍ଥିତିରେ ଓଡ଼ିଶାରେ ଜନତା ଦଳରେ ସଙ୍କଟ ଦେଖା ଦେଇଥିଲା । କେବଳ ସେତିକି ନୁହେଁ, ସ୍ୱୟଂ ବିଜୁବାବୁଙ୍କ ବିରୁଦ୍ଧରେ ବିଭିନ୍ନ ମୋକଦ୍ଦମା ଆଗତ କରାଯାଇଥିଲା । କଥାରେ ଅଛି, ମଣିଷକୁ ନିର୍ଭେଜା ଭାବରେ ପ୍ରଶସ୍ତି କିମ୍ବା ସମାଲୋଚନା ମିଳି ନଥାଏ । ସେ ପ୍ରଶସ୍ତି ସଙ୍ଗରେ ସମାଲୋଚନାର ମଧ୍ୟ ସମ୍ମୁଖୀନ ହୋଇଥାଏ ।

ଯିଏ ଯେତିକି ଦୁଃସାହସିକ, ସେତିକି ଅଧିକ ତାର ସମାଲୋଚକ । ବିଜୁବାବୁ ଏଥିରୁ ବାଦ୍ ପଡ଼ି ନଥିଲେ ।

କିନ୍ତୁ ଯେତେ ଯାହା ହେଲେ ମଧ୍ୟ ବିଜୁବାବୁ ତାଙ୍କ ଜୀବନ କାଳରେ ପ୍ରମାଣ କରିଯାଇଛନ୍ତି ଯେ, ସେ ହିଁ ଓଡ଼ିଶାର ଏପରି ଜଣେ ଆକର୍ଷଣୀୟ ବ୍ୟକ୍ତିତ୍ୱ, ଯାହାର କୌଣସି ବିକଳ୍ପ ନାହିଁ ।

ବିଜୁବାବୁ ଥିଲେ ଜଣେ ଅସାଧାରଣ ନେତା, ପ୍ରଚଣ୍ଡ ଦେଶପ୍ରେମୀ, ସାହସୀ ଓ ଅଦମନୀୟ ବ୍ୟକ୍ତିତ୍ୱର ସୁଦୃଢ଼ ଭିତ୍ତି ପ୍ରସ୍ତର ।

ସୁଦୀର୍ଘ ଶରୀରର ଅଧିକାରୀ ଥିଲେ । ସେହିଭଳି ପ୍ରଶସ୍ତ ଓ ଉଦାର ମନ ଥିଲା ତାଙ୍କର । ମନ ଭିତରେ କପଟତା ନ ଥିଲା । ମୁକ୍ତ କଣ୍ଠରେ ଆପଣାର ଦୋଷ ତ୍ରୁଟି ପ୍ରକାଶ କରିବାରେ ଆଦୌ କୁଣ୍ଠିତ ନଥିଲେ । ମଣିଷକୁ ମଣିଷ ଭାବରେ ହିଁ ଭଲ ପାଉଥିଲେ । ଯାହା ସେ ଅନ୍ତର ଭିତରେ ଉପଲବ୍ଧି କରୁଥିଲେ ତାକୁହିଁ ସାହସର ସହିତ ସ୍ପଷ୍ଟ ମନରେ ପ୍ରକାଶ କରୁଥିଲେ । ସେତେବେଳେ ସେ ଲାଭ କ୍ଷତିର ହିସାବ କରୁ ନଥିଲେ ।

# ବିଚିତ୍ର ପରିବାର ସମ୍ବନ୍ଧରେ

ବିଜୁ ପଟ୍ଟନାୟକଙ୍କ ପାରିବାରିକ ଜୀବନ ବିଚିତ୍ର ଥିଲା । ତାଙ୍କର ପିତା ଥିଲେ ନ୍ୟାୟମୂର୍ତ୍ତି ଏବଂ ବିଶିଷ୍ଟ ସାହିତ୍ୟ ପ୍ରେମୀ, ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ, ତାଙ୍କର ମାତା ଥିଲେ ବଙ୍ଗୀୟ ଲଳନା ଆଶାଲତା ରାୟ । ବିଜୁ ବାବୁଙ୍କ କନ୍ୟା ଗୀତା ଜଣେ ମହାରାଷ୍ଟ୍ରୀ ଯୁବକଙ୍କୁ ବିବାହ କରି ଗୀତା ମେହେଟ୍ଟା ପାଲଟି ଯାଇଥିଲେ । ବିଜୁ ବାବୁଙ୍କ ସାହିତ୍ୟାଦର୍ଶରେ ପ୍ରଭାବିତ ହୋଇ ଗୀତା ମେହେଟ୍ଟା ଆନ୍ତଃରାଷ୍ଟ୍ରୀୟ ଖ୍ୟାତି ସମ୍ପନ୍ନ ସାହିତ୍ୟିକା ପାଲଟି ଯାଇଥିଲେ ।

ବିଜୁ ବାବୁଙ୍କ ପତ୍ନୀ ଜ୍ଞାନ ପଟ୍ଟନାୟକ ପଞ୍ଜାବୀ ପରିବାରର କନ୍ୟା ଥିଲେ ।

ବିଜୁ ବାବୁ ବ୍ରାହ୍ମ ଧର୍ମାବଲମ୍ବୀ ଥିଲେ ।

ଏ ସମସ୍ତ ସତ୍ତ୍ୱେ ବିଜୁ ପଟ୍ଟନାୟକ ବଳିଷ୍ଠ ଓଡ଼ିଆ ସ୍ୱାଭିମାନକୁ ଛାଡ଼ି ପାରି ନଥିଲେ । ଆକୁମାରୀ ହିମାଚଳ ବିରାଟ ଭାରତବର୍ଷରେ ସେ ଓଡ଼ିଆର ସ୍ୱାତନ୍ତ୍ର୍ୟ, କଳିଙ୍ଗର ସ୍ୱାଭିମାନ ହିଁ ଖୋଜି ବୁଲୁଥିଲେ । ଅତୀତ ଗୌରବର ପୁନଃ ପ୍ରତିଷ୍ଠା କରିବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା ।

ଝଡ଼ ଝଞ୍ଜା, ହତାଶା, ପ୍ରତିକୂଳ ପରିସ୍ଥିତି, ପରିବେଶ ଏହି କର୍ମଦକ୍ଷ ପୁରୁଷଙ୍କୁ କେବେହେଲେ ଲକ୍ଷ୍ୟଚ୍ୟୁତ କରିପାରି ନ ଥିଲା ।

# କମ୍ବଦନ୍ତୀ ପୁରୁଷ ବିଜୁ ପଟ୍ଟନାୟକ

ଜୀବିତାବସ୍ଥାରେ 'କମ୍ବଦନ୍ତୀ ପୁରୁଷ' ଭଳି ଉପାଧି ଲାଭ କରିବାର ସୌଭାଗ୍ୟ ଯେଉଁ କେତେଜଣ ବ୍ୟକ୍ତି ଲାଭ କରିଛନ୍ତି, ସେମାନଙ୍କ ମଧ୍ୟରେ ଓଡ଼ିଶାର ସୁଯୋଗ୍ୟ ସନ୍ତାନ ବିଜୁ ପଟ୍ଟନାୟକ ଅନ୍ୟତମ । କେବଳ ଓଡ଼ିଶା କି ଭାରତ ନୁହେଁ, ପୃଥିବୀର ଗଣ୍ୟ-ମାନ୍ୟ ବ୍ୟକ୍ତିମାନେ ବିଜୁ ପଟ୍ଟନାୟକଙ୍କୁ ଜାଣିଥିଲେ ଓ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରି 'ବିଜୁ' ବୋଲି ଡାକୁଥିଲେ ।

କଥିତ ଅଛି, ଭାରତରେ ଦୁଇଜଣ ବ୍ୟକ୍ତିଙ୍କୁ ପୃଥିବୀର ସାଧାରଣ ଓ ଅସାଧାରଣ ବ୍ୟକ୍ତିମାନେ ଜାଣନ୍ତି । ସେହି ଦୁଇ ବ୍ୟକ୍ତି ହେଉଛନ୍ତି ପଣ୍ଡିତ ଜବାହାରଲାଲ୍ ନେହେରୁ ଏବଂ ବିଜୁ ପଟ୍ଟନାୟକ ।

ପୃଥିବୀର ବହୁ ବିଚକ୍ଷଣ ରାଜନୈତିକ ସମୀକ୍ଷକ ପଣ୍ଡିତ ନେହେରୁଙ୍କ ଜୀବିତାବସ୍ଥାରେ ମତ ଦେଇଥିଲେ ଯେ, ନେହେରୁଙ୍କ ପରେ ଭାରତର ପ୍ରଧାନ ମନ୍ତ୍ରୀ ହେବା ପାଇଁ ଯେଉଁ କେତେଜଣ ଯୋଗ୍ୟ ବ୍ୟକ୍ତି ଥିଲେ, ସେମାନଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ ଅନ୍ୟତମ । ମୋଟ ଉପରେ, ବିଜୁ ପଟ୍ଟନାୟକ ସମସ୍ତଙ୍କର ଆସ୍ଥାଭାଜନ ହୋଇ ପାରିଥିଲେ ।

ବିଜୁ ପଟ୍ଟନାୟକ ମାତ୍ର ଚାଳିଶ ବର୍ଷ ବୟସରେ ଓଡ଼ିଶା କଂଗ୍ରେସର ସଭାପତି ପଦ ମଣ୍ଡନ କରି ପାରିଥିଲେ ଓ ପଇଁଚାଳିଶ ବର୍ଷ ବୟସରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ପାରିଥିଲେ ।

ବିଜୁ ପଟ୍ଟନାୟକ କ୍ଷମତା ଲୋଭୀ ନେତା ନ ଥିଲେ । କ୍ଷମତା ଅପେକ୍ଷା ସେ ସଂସଦୀୟ ଗଣତନ୍ତ୍ରକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଲାଗି ପଡ଼ିଥିଲେ । ତେଣୁ କ୍ଷମତା ତାଙ୍କୁ ପ୍ରଲୁବ୍ଧ କରିପାରି ନଥିଲା ।

ସତୁରି ଦଶକର ପ୍ରାରମ୍ଭରେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଜାତୀୟ ରାଜନୀତିରୁ ଦୂରେଇ ଆସି ତତ୍କାଳୀନ ମାଡ୍ରାଜ ପ୍ରଦେଶକୁ ନିଜର କର୍ମକ୍ଷେତ୍ର କରି ବିରୋଧୀ ମଞ୍ଚକୁ ସୁଦୃଢ଼ କଲାପରି ବିଜୁ ପଟ୍ଟନାୟକ ଓଡ଼ିଶାରେ ସୁସ୍ଥ ଗଣତାନ୍ତ୍ରିକ ବ୍ୟବସ୍ଥା ପାଇଁ ଜାତୀୟ ରାଜନୀତିରୁ ଓହ୍ଲାଇ ଆସି ସୁଦୃଢ଼ ବିରୋଧୀ ଦଳ ଗଠନ ପାଇଁ ଓଡ଼ିଶା ରାଜନୀତିରେ ଯୋଗ ଦେଇଥିଲେ ।

ଅନେକେ ବିଜୁ ପଟ୍ଟନାୟକଙ୍କୁ 'ସ୍ୱପ୍ନର ସୌଦାଗର' କହୁଥିଲେ । କିନ୍ତୁ ଏହି ସୌଦାଗର ସ୍ୱପ୍ନକୁ ବିକ୍ରୟ ନ କରି ବିତରଣ କରୁଥିଲେ । ତାଙ୍କର ଯୁକ୍ତିଥିଲା, ଯେଉଁ ଜାତି ସ୍ୱପ୍ନ ଦେଖେ ସେ କେବଳ ସ୍ୱପ୍ନକୁ ସାକାର କରିଥାଏ । ହୀନମନ୍ୟତାକୁ ଫିଙ୍ଗି ଦେଇ ବଡ଼ ହେବାର ସ୍ୱପ୍ନ ଦେଖିବାକୁ ସେ ଓଡ଼ିଶା-ବାସୀଙ୍କୁ ବାରମ୍ବାର ନିବେଦନ କରୁଥିଲେ । ଅନୁଗତ ଓ ସମା-ଲୋଚକମାନେ ସମସ୍ୱରରେ କହୁଥିଲେ, ବିଜୁବାବୁଙ୍କ ମସ୍ତିଷ୍କ-ସୁପର୍‌ସୋନିକ୍ ଜେଟ୍ ଇଞ୍ଜିନ୍ ପରି ଅତ୍ୟନ୍ତ କ୍ଷିପ୍ର । ତାଙ୍କର ସହଯୋଗୀମାନେ ତାଙ୍କର ଗତି ସଙ୍ଗରେ ତାଳଦେଇ ପାରୁ ନାହାନ୍ତି ।

ବିଜୁବାବୁଙ୍କ ପାଠ ଥିଲା ବିଜ୍ଞାନ, କିନ୍ତୁ ଚିନ୍ତା ଥିଲା ଦର୍ଶନ । ଜୀବନର ବହୁ କ୍ଷେତ୍ରରେ ସେ ଇତିହାସ ସୃଷ୍ଟି କରି-ଯାଇଛନ୍ତି । ତେଣୁ ସମସ୍ତର ଇତିହାସରେ ତାଙ୍କର ଜୀବନୀ ଏକ ଅମ୍ଳାନ ଅଧ୍ୟାୟ ।

ବିଜୁଙ୍କ ଜୀବନ ଅନେକଙ୍କୁ ବିଚିତ୍ର ପରି ମନେ ହେଉଥିଲା । ସେ ସ୍ୱପ୍ନବାଦୀ, ଆଦର୍ଶବାଦୀ; ଅଥଚ ବ୍ୟାବହାରିକ ଜ୍ଞାନ ତାଙ୍କର ଅତ୍ୟନ୍ତ ତୀବ୍ର ଥିଲା ।

ନୂତନ ଚିନ୍ତା, ନୂତନ ଧାରାକୁ ସେ ପସନ୍ଦ କରୁଥିଲେ, ଅଥଚ ପୁରାତନ ପନ୍ଥୀମାନଙ୍କ ସହିତ ହାତ ମିଳାଇ କାମ କରୁଥିଲେ ।

ଯୁବ ଶକ୍ତି ଉପରେ ବିଜୁବାବୁଙ୍କର ଅଗାଧ ବିଶ୍ୱାସ ଓ ପ୍ରଭାବ ଥିଲା । ସେଥିପାଇଁ ଓଡ଼ିଶାର ଯୁବକ ଓ ଛାତ୍ରମାନଙ୍କର ବିଜୁଙ୍କ ଉପରେ ପ୍ରଚଣ୍ଡ ଆସ୍ଥା ଥିଲା ।

ରାଜନୀତିର କଠୋର ସଂଗ୍ରାମରେ ସେ ବହୁବାର ରକ୍ତାକ୍ତ ଓ କ୍ଷୁବ୍ଧ ହୋଇଥିଲେ ମଧ୍ୟ ତାଙ୍କ ଅନ୍ତରର କୋମଳତା ନଷ୍ଟ ହୋଇ ନଥିଲା ।

ମୃତ୍ୟୁ ପର୍ଯ୍ୟନ୍ତ ବିଜୁବାବୁ ଥିଲେ ଓଡ଼ିଆମାନଙ୍କ ପାଇଁ ତରୁଣ ।

ପ୍ରାୟ ୫୦ ବର୍ଷର ରାଜନୈତିକ ଜୀବନରେ ବିଜୁବାବୁ ବହୁ ପ୍ରଶଂସା ଲାଭ କରିବା ସଙ୍ଗେ ତୀବ୍ର ସମାଲୋଚନାର ଶରବ୍ୟ ମଧ୍ୟ ହୋଇଥିଲେ । କିନ୍ତୁ ବ୍ୟକ୍ତିଗତ ଭାବରେ ସେ କାହାରି ବିରୋଧରେ ଅଭିଯୋଗ କରି ନଥିଲେ । ମହାଦେବ ଶିବଙ୍କ ପରି ସବୁ ବିଷ ପାନ କରି ନୀଳକଣ୍ଠ ସାଜିଥିଲେ ଓ ଅମୃତର ସନ୍ଧାନ ଦେଇଥିଲେ ।

ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ଆଦର୍ଶକୁ ପାଥେୟ କରି ସେ ରାଜନୀତିର ଉତ୍ତପ୍ତ ବୈତରଣୀ ପାରି ହୋଇଥିଲେ ।

ଓଡ଼ିଶା ତଥା ଭାରତର ଭବିଷ୍ୟତ ନେଇ ସେ କୌଣସି ସମୟରେ ହତାଶ ହୋଇ ନଥିଲେ । ଯୁବଶକ୍ତି ସଚେତନ ହେଲେ ସବୁ ସମସ୍ୟାର ସମାଧାନ ହୋଇଯିବ ବୋଲି ସେ ବାରମ୍ବାର କହୁଥିଲେ । ସେ କହୁଥିଲେ ସାଧନା, ଅଧ୍ୟବସାୟ ଓ ସଂହତି ଦ୍ୱାରା ରାଜ୍ୟ ଓ ଦେଶର ଭବିଷ୍ୟତ ସରସ, ସୁନ୍ଦର ହୋଇପାରିବ ।

ପାରାଦ୍ୱୀପ ବନ୍ଦରଠାରୁ ଆରମ୍ଭ କରି ରାଉରକେଲା ଇସ୍ପାତ କାରଖାନା ଏବଂ ରେଙ୍ଗାଲି ପ୍ରକଳ୍ପଠାରୁ ଆରମ୍ଭ କରି ଚୌଦ୍ୱାର ଲୁଗାକଳ ପର୍ଯ୍ୟନ୍ତ ପ୍ରତ୍ୟେକଟିରେ ବିଜୁ ପଟ୍ଟନାୟକଙ୍କ ସ୍ୱାକ୍ଷର ଦେଖିବାକୁ ମିଳେ ।

ସେ ସରକାରରେ ଥାଆନ୍ତୁ ବା ନଥାଆନ୍ତୁ, ରାଜ୍ୟର ପ୍ରଗତିର ରଥଚକକୁ ବନ୍ଦ କରିବାକୁ ଉଦ୍ୟମ କଲେ ସେ ବରଦାସ୍ତ କରୁ ନଥିଲେ ।

ବୟସ ଗଡ଼ି ଯାଉଥିଲା । ଏହା ସତ୍ତ୍ୱେ ଓଡ଼ିଶାକୁ ପ୍ରଗତିର ତୁଙ୍ଗ ଶିଖରା କୂଳକୁ ନେଇଯିବା ପାଇଁ ସେ ଆଗକୁ ମାଡ଼ି ଚାଲିଥିଲେ ।

୧୯୬୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନ ସେମିନାର୍‌ରେ ଅତିଥି ଭାବରେ ଯୋଗଦେଇ "ଯୁଦ୍ଧ ଓ ରାଜନୀତି" ବିଷୟରେ ପାଖ ୨ ଘଣ୍ଟା ଧରି ସେ ଯେପରି ଅତି ଉଚ୍ଚସ୍ତରର ବୌଦ୍ଧିକ ଆଲୋଚନା ସାବଲୀଳ ଭାବରେ ପ୍ରଦାନ କଲେ, ତାହା ତାଙ୍କର ବିଦ୍ୱାନ ସୁଲଭ ପ୍ରଜ୍ଞାର ପ୍ରକୃଷ୍ଟ ପ୍ରମାଣ ଦେଇଥିଲା । ଅଥଚ ସମସାମୟିକ ସମାଜରେ ସେ

ଜଣେ ସଫଳ ଶିଳ୍ପପତି ଓ ତୁଙ୍ଗ ରାଜନୀତିଜ୍ଞ ରୂପରେ ହିଁ ପରିଚିତ ଥିଲେ ।

ତତ୍କାଳୀନ ଓଡ଼ିଶାର ତୁଙ୍ଗନେତା ଉତ୍କଳ ହରେକୃଷ୍ଣ ମହତାବଙ୍କର ଡାହାଣ ହାତ ରୂପେ ସେ କର୍ମଚଞ୍ଚଳ ଥିଲେ । ଅନଗ୍ରସର ଓଡ଼ିଶାର ସମୃଦ୍ଧି ପାଇଁ ଦୃଢ଼ ଶିଳ୍ପାୟନକୁ ସେ ପ୍ରୋତ୍ସାହନ ପ୍ରଦାନ କରୁଥିଲେ । ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ଜବାହରଲାଲ ନେହେରୁଙ୍କର ସେ ଥିଲେ ବିଶ୍ୱସ୍ତ ଅନୁଗାମୀ ଓ ଇନ୍ଦିରା ଗାନ୍ଧୀଙ୍କର ପରମ ବନ୍ଧୁ । ଅଥଚ ଇନ୍ଦିରା ଗାନ୍ଧୀଙ୍କର ପ୍ରଧାନମନ୍ତ୍ରୀତ୍ୱ କାଳରେ ୧୯୭୫ ମସିହା ଜୁନ ମାସ ୨୬ ତାରିଖ ରାତିରେ, ଦେଶରେ ଜରୁରୀ ପରିସ୍ଥିତି ଘୋଷଣା ହେବାମାତ୍ରେ ବିଜୁ ପଟ୍ଟନାୟକ ମିସାରେ ଗିରଫ ହୋଇଥିଲେ । କାରଣ ୧୯୭୫ର ପାର୍ଟକୁ ରାତି ଜଣି ବିଧାନ ସଭାରେ ସେ ବିରୋଧୀ ଦଳର ନେତା ହୋଇଥିଲେ ।

## ପ୍ରଶାସନକ କ୍ଷେତ୍ରରେ ନାଲଫିତା ଓ ବିଜୁ ପଟ୍ଟନାୟକ

ସ୍ୱାଧୀନତା ପରବର୍ତ୍ତୀ ପ୍ରଶାସନିକ କ୍ଷେତ୍ରରେ ନାଲିଫିତାର କାରସାଦି ଓ ଫାଇଲ ଚାପିବା ନୀତିକୁ ନାପସନ୍ଦ କରି ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ଏକ ସାକ୍ଷାତ୍କାରରେ କହିଥିଲେ, "ମୋ ଅଫିସରମାନେ ମୋ ପ୍ରତି କିମ୍ବା ମୋ ସରକାର ପ୍ରତି ଅନୁଗତ ହେବା ମୁଁ ଚାହେଁନା । ସେମାନେ ରାଜ୍ୟବାସୀଙ୍କ ପ୍ରତି ଅନୁରକ୍ତ ହେବା ମୁଁ ଚାହେଁ ।"

ସେ ପୁଣି କହିଥିଲେ, "ନୂଆ ଛାଞ୍ଚ ଓ ନୂଆ ପଦକ୍ଷେପ ଗ୍ରହଣ କରିବାକୁ ଆମେ ଯାଉଛେ । ତେଣୁ ମୋର ଅଫିସରମାନେ କେବଳ ପ୍ରଶାସକ ହେଲେ ଚଳିବ ନାହିଁ ! ସେମାନଙ୍କୁ ଚିନ୍ତା କରିବାକୁ ହେବ । ଫାଇଲ ଉପରେ ପ୍ରଭାବ ବିସ୍ତାର ନ କରି, ଲୋକମାନଙ୍କ ସେବାକରି ସେମାନେ ପ୍ରଭାବ ବିସ୍ତାର କରନ୍ତୁ ।"

### ସାହସୀ ପାଇଲଟ ବିଜୁ ପଟ୍ଟନାୟକ

୧୯୬୨ ମସିହାର ଚୀନ ଆକ୍ରମଣ ବେଳେ ନିଜ ଜୀବନକୁ ବାଜି ଲଗାଇ ବିଜୁ ପଟ୍ଟନାୟକ ପଣ୍ୟବାହୀ ବିମାନରେ ଖାଦ୍ୟ ନେଇ ହିମାଳୟର ଗିରି ଗହ୍ୱରରେ ଥିବା ଭାରତୀୟ ଯବାନ ମାନଙ୍କ ନିକଟରେ ଖାଦ୍ୟ ଶସ୍ୟ ପହଞ୍ଚାଇ ଦେଇଥିଲେ ।

ପାକିସ୍ଥାନର ବୋମା ବର୍ଷଣକୁ ଖାତିର ନ କରି ବିଜୁବାବୁ ଶ୍ରୀନଗର ବିମାନ ଘାଟୀରେ ଭାରତୀୟ ବିମାନକୁ ଅବତରଣ କରାଇ କଣ୍ଟ୍ରୋଲ ଟାୱାରକୁ ଦଖଲ କରିଥିଲେ ।

ଓଲ୍ନ୍ଦାଜମାନଙ୍କ ଆଖିରେ ଧୂଳିଦେଇ ବିଜୁବାବୁ ଇଣ୍ଡୋନେସିଆର ନେତା ମାରସୁର୍‌ଙ୍କୁ ଭାରତ ନେଇ ଆସିଥିଲେ ।

## ଆନ୍ତର୍ଜାତୀୟ କଳିଙ୍ଗ ପୁରସ୍କାର

ଆନ୍ତର୍ଜାତୀୟ 'କଳିଙ୍ଗ ପୁରସ୍କାର'ର ସଂସ୍ଥାପକ ବିଜୁ ପଟ୍ଟନାୟକ ଏହି ପୁରସ୍କାର ପାଇଁ ଯୋଗାଇ ବିଶ୍ୱ ମାନଚିତ୍ରରେ ଓଡ଼ିଶାକୁ ଶ୍ରେଷ୍ଠସ୍ଥାନ ପ୍ରଦାନ କରିଅଛନ୍ତି ।

# ବିଜୁ ପଟ୍ଟନାୟକଙ୍କ ଜୀବନର
# କେତେକ ସ୍ମରଣୀୟ ଘଟଣା

**୧୯୧୬ ମସିହା**

ମାର୍ଚ୍ଚ ମାସ ୫ ତାରିଖ, ଏହି ଶୁଭ ଦିନରେ ବିଜୁ ପଟ୍ଟନାୟକ ଜନ୍ମ ନେଲେ କଟକ ତୁଳସୀପୁର ସ୍ଥିତ ଆନନ୍ଦ ଭବନରେ, ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀଙ୍କ ଔରସରୁ ।

ଏହାପରେ ବାଲ୍ୟ ଶିକ୍ଷା ସମାପନ ହେଲା, କଟକ ଖ୍ରୀଷ୍ଟ କଲେଜିଏଟ୍ ସ୍କୁଲ ଓ ରେଭେନ୍ସା କଲେଜରେ ।

କଲେଜ ଶିକ୍ଷା ସମାପ୍ତ ପରେ ପ୍ରଥମେ ସେ ରୟାଲ୍ ଇଣ୍ଡିଆନ୍ ଏୟାର୍ ଫୋର୍ସରେ ଓ ତାପରେ ଭାରତୀୟ ଜାତୀୟ ବିମାନ ପରିଚାଳନ ସଂସ୍ଥାରେ ଯୋଗଦେଲେ ।

**୧୯୪୩ ମସିହା**

ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଛପା ଯାଇଥିବା ପ୍ରଚାର ପତ୍ର ବିମାନରୁ ତଳକୁ ପକାଇ ଲୋକଙ୍କ ଭିତରେ ପ୍ରଚାର କରିବା ଅଭିଯୋଗରେ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ଦ୍ୱାରା ଗିରଫ ହେଲେ ।

**୧୯୪୭ ମସିହା**

୧୯୪୭ ମସିହା ଜୁଲାଇ ୨୨ ତାରିଖରେ ଜାକର୍ତ୍ତା ଯାଇଥିଲେ ।

**୧୯୪୮ ମସିହା**

ପ୍ରଥମ ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ ଭାରତୀୟ ସୈନ୍ୟମାନଙ୍କୁ ନେଇ ଯାଇଥିବା ପ୍ରଥମ ବିମାନ ଚଳାଇ ସେ ଓହ୍ଲାଇ ଥିଲେ ଶ୍ରୀନଗରରେ ।

ଇଣ୍ଡୋନେସିଆର ଜାତୀୟତାବାଦୀ ନେତା ସୁଲତାନ ସାହାରିୟର୍‌ଙ୍କୁ ଡଚ୍ ସୈନ୍ୟଙ୍କ ପ୍ରଚଣ୍ଡ ବୋମା ମାଡ଼ ଭିତରେ ସାହସର ସହିତ ଉଦ୍ଧାର କରି ବିମାନରେ ଦିଲ୍ଲୀ ନେଇ ଆସି ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ ।

**୧୯୫୨ ମସିହା**

ବିଜୁ ପଟ୍ଟନାୟକ ରାଜନୀତିରେ ପ୍ରବେଶ କଲେ ଓ ବିଧାନ ସଭା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ବିଜୟୀ ହେଲେ ।

**୧୯୬୧ ମସିହା**

ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । କାମରାଜ ଯୋଜନା ଅନୁସାରେ ୧୯୬୩ ମସିହାରେ କଂଗ୍ରେସ ତ୍ୟାଗ କଲେ ।

**୧୯୭୧ ମସିହା**

୧୯୭୧ ମସିହାରେ ଉତ୍କଳ କଂଗ୍ରେସ କଲେ ଓ ସାରା ଓଡ଼ିଶାର ଜନ ସମର୍ଥନ ଲାଭ କଲେ ।

**୧୯୭୭ ମସିହା**

ବିଜୁ ପଟ୍ଟନାୟକ ଜରୁରୀକାଳୀନ ପରିସ୍ଥିତିରେ ଆଇନ ଅମାନ୍ୟ ଆନ୍ଦୋଳନ ଯୋଗୁ ବନ୍ଦୀ ହୋଇ ଜେଲ ଯାଇଥିଲେ ।

ଲୋକସଭା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ବିଜୟୀ ହେଲେ ।

କେନ୍ଦ୍ରରେ ମୋରାରଜୀ ଦେଶାଇ ମନ୍ତ୍ରୀ ପରିଷଦରେ କେନ୍ଦ୍ର ଇସ୍ପାତ ଓ ଖଣି ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କଲେ ।

## ୧୯୯୦ ମସିହା

୧୯୯୦ ମସିହାରେ ଦ୍ୱିତୀୟ ଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କଲେ । ୧୪୭ ଜଣ ସଭ୍ୟ ବିଶିଷ୍ଟ ବିଧାନ ସଭା ନିର୍ବାଚନ ମଣ୍ଡଳୀ ମଧ୍ୟରୁ ୧୨୩ଟି ଆସନରେ ତାଙ୍କ ଦ୍ୱାରା ପରିଚାଳିତ ଜନତା ଦଳ ବିଜୟ ଲାଭ କରିଥିଲା ।

## ୧୯୯୭ ମସିହା

୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖ ସକାଳ ସାଢ଼େ ୭ଟା ସମୟରେ ମହାନ୍ ଦେଶପ୍ରେମୀ ନେତା ବିଜୁ ପଟ୍ଟନାୟକ ପରଲୋକ ଗମନ କଲେ ।

ପୁରୀର ସ୍ୱର୍ଗଦ୍ୱାରଠାରେ ୧୮ ତାରିଖ ସନ୍ଧ୍ୟାରେ ବିଜୁ ପଟ୍ଟନାୟକଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା ।

## ପ୍ରାଣୀର ଭଲମନ୍ଦ ବାଣୀ ···

ମହାନ୍ ଜନନାୟକ ବିଜୁ ପଟ୍ଟନାୟକଙ୍କ ୧୯୯୭ ମସିହା ଅପ୍ରେଲ ୧୭ ତାରିଖ ଦିନ ସକାଳେ ନୂଆଦିଲ୍ଲୀଠାରେ ପରଲୋକ ଘଟିଲା । ଏହି ଦୁଃଖଦ ଘଟଣା ବିଭିନ୍ନ ଗଣ ମାଧ୍ୟମରେ ପ୍ରଚାରିତ ହେବା ମାତ୍ରେ ସାରା ଭାରତର ଜନତା ସ୍ତବ୍ଧ ହୋଇ ଯାଇଥିଲେ । ଜନସାଧାରଣଙ୍କ ମଧ୍ୟରେ ଶୋକର ଛାୟା ଖେଳି ଯାଇଥିଲା ।

ତାଙ୍କର ଜନ୍ମମାଟି କଟକ ସହରର ଦୋକାନ ବଜାର ସବୁ ଆପେ ଆପେ ବନ୍ଦ ହୋଇ ଯାଇଥିଲା । ସରକାରୀ ଅଫିସ, ସ୍କୁଲ ଓ କଲେଜ ପ୍ରଭୃତି ଛୁଟି ହୋଇ ଯାଇଥିଲା ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରାର୍ଥନା ସଭାମାନ ଅନୁଷ୍ଠିତ ହୋଇଥିଲା । ବହୁ ସ୍ଥାନରେ ବିଜୁବାବୁଙ୍କ ଫଟୋକୁ ଫୁଲରେ ସଜାଯାଇ ରଖା ହୋଇଥିଲା । ଲୋକମାନେ ବିଜୁବାବୁଙ୍କ ଫଟୋରେ ଫୁଲମାଳ ଦେଇ ପ୍ରିୟନେତାଙ୍କ ଆତ୍ମାପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

ବିଜୁବାବୁଙ୍କ ଆତ୍ମା ପ୍ରତି ସମ୍ମାନ ଜଣାଇ ଚଳଚ୍ଚିତ୍ର ପ୍ରେକ୍ଷାଳୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମମାନ ବନ୍ଦ ରଖା ଯାଇଥିଲା ।

ଓଡ଼ିଶା ହାଇକୋର୍ଟ ଓଡ଼ିଶାର ସୁଯୋଗ୍ୟ ବରପୁତ୍ର ବିଜୁ ପଟ୍ଟନାୟକଙ୍କ ପରଲୋକଗତ ଆତ୍ମା ପ୍ରତି ସମ୍ମାନ ଜଣାଇ ଅପ୍ରେଲ ୧୭ ତାରିଖ ପୂର୍ବାହ୍ଣ ସାଢ଼େ ଦଶଟାରୁ କୋର୍ଟ ଓ ଅଫିସ୍‌ର କାର୍ଯ୍ୟ ବନ୍ଦ ରଖିଥିଲେ । ନିମ୍ନ ଅଦାଲତମାନ ମଧ୍ୟ ବନ୍ଦ ରହିଥିଲା ।

ସେହି ସମୟରେ ରାଷ୍ଟ୍ରପତି ଡକ୍ଟର ଶଙ୍କର ଦୟାଳ ଶର୍ମା ବିଜୁ ପଟ୍ଟନାୟକଙ୍କ ବିୟୋଗରେ ଗଭୀର ଶୋକ ପ୍ରକାଶ କରି କହିଥିଲେ ଯେ, 'ବିଜୁବାବୁଙ୍କ ବିୟୋଗ ତାଙ୍କ ପାଇଁ ଏକ ବ୍ୟକ୍ତିଗତ କ୍ଷତି । ସେ ଆହୁରି କହିଥିଲେ ଯେ, ରାଷ୍ଟ୍ର ପୁନର୍ଗଠନର ବିଭିନ୍ନ କ୍ଷେତ୍ରରେ ଜଣେ ଦକ୍ଷ ବ୍ୟବସ୍ଥାପକ ତଥା ରାଷ୍ଟ୍ରନୀତିଜ୍ଞ ରୂପେ ବିଜୁବାବୁଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ । 'ଭାରତ ଛାଡ଼' ଆନ୍ଦୋଳନରେ ବିଜୁବାବୁ ଯେପରି ସାହସର ସହିତ ସଂଗ୍ରାମ କରି କାରାବରଣ କରିଥିଲେ, ତାହା ରାଷ୍ଟ୍ରପତି ତାଙ୍କ ଶୋକ ବାର୍ତ୍ତାରେ ସ୍ମରଣ କରିଥିଲେ । ବିଜୁବାବୁଙ୍କର ବଳିଷ୍ଠ ଭୂମିକା ଯୁବ ସମାଜକୁ ଅନୁପ୍ରାଣିତ କରିଛି ।

ତାଙ୍କ ବିୟୋଗରେ ଦେଶ ଜଣେ ଦୂରଦ୍ରଷ୍ଟା ତଥା ଦରିଦ୍ର ଲୋକଙ୍କର ଉତ୍‌ଥାନ ଓ କଲ୍ୟାଣ ପାଇଁ ଉତ୍ସର୍ଗୀକୃତ ମହାନ୍ ବ୍ୟକ୍ତିଙ୍କୁ ହରାଇଲା ।

ସେହି ସମୟରେ ଉପରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଲୋକ ସଭାର ବାଚସ୍ପତି ଓ କେନ୍ଦ୍ର ମନ୍ତ୍ରୀ ମଣ୍ଡଳର ବହୁ ସଦସ୍ୟ ଓ ସାଂସଦ ଏବଂ ବିଭିନ୍ନ ପ୍ରଦେଶର ମୁଖ୍ୟମନ୍ତ୍ରୀ ସେମାନଙ୍କ ଶୋକ ବାର୍ତ୍ତାରେ ପ୍ରକାଶ କରିଥିଲେ ଯେ, ବିଜୁବାବୁଙ୍କ ବିୟୋଗରେ ଦେଶ ଜଣେ ମହାନ୍ ବ୍ୟକ୍ତି ତଥା ଗଣନେତାଙ୍କୁ ହରାଇଲା । ସେ ଦେଶ ଗଠନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ ।

ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ରମାନୁଜମ୍ ତାଙ୍କ ଶୋକ ବାର୍ତ୍ତାରେ କହିଥିଲେ ଯେ, ବିଜୁବାବୁ ଜଣେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ଦକ୍ଷ ପ୍ରଶାସକ ଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଶୋକ ବାର୍ତ୍ତାରେ କହିଥିଲେ ଯେ, ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ରାଜନୈତିକ

ପ୍ରେକ୍ଷାପଟରେ ବିଜୁ ପଟ୍ଟନାୟକଙ୍କ ଉପସ୍ଥିତି ଜାତୀୟ ଓ ରାଜ୍ୟ ରାଜନୀତିକୁ ନାନା ଭାବରେ ପ୍ରଭାବିତ କରିଥିଲା । ତାଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ଷାଠିଏ ଦଶକର ଆଦ୍ୟ ଭାଗରେ ପ୍ରଥମ ଥର ପାଇଁ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠ ଦଳ ରୂପେ ଉଭା ହୋଇଥିଲା । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ଥିଲେ ବଦ୍ଧ ପରିକର ଏବଂ ଓଡ଼ିଶାକୁ ସେ ନିବିଡ଼ ଭାବରେ ଭଲ ପାଉଥିଲେ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରରେ ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ରୂପେ ସେ ଦେଶ ଓ ରାଜ୍ୟର ଉନ୍ନତି କଳ୍ପେ ପ୍ରଶଂସନୀୟ କାର୍ଯ୍ୟ କରିଛନ୍ତି ।

ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଯୋଗଦାନ ଓ ପରବର୍ତ୍ତୀ କାଳରେ ସାଧାରଣ ଜୀବନରେ ତାଙ୍କର ନେତୃତ୍ୱ ତାଙ୍କୁ ଜଣେ ଦେଶପ୍ରେମୀ ଓ ସାହସୀ ବ୍ୟକ୍ତି ରୂପେ ଗଢ଼ି ତୋଳିଛି ।

ପ୍ରକୃତ ପକ୍ଷେ ତାଙ୍କର ଦୁଃସାହସିକତା ଓ ଉଦାରତାର କାହାଣୀ ତାଙ୍କୁ କିମ୍ବଦନ୍ତୀ ପୁରୁଷ ରୂପେ ତାଙ୍କ ଜୀବଦ୍ଦଶାରେ ହିଁ ପ୍ରତିଷ୍ଠିତ କରି ପାରିଛି ।

ପରିଶେଷରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଥିଲେ, "ମୋର ତାଙ୍କ ସହିତ ସମ୍ପର୍କ ପଚାଶ ବର୍ଷ ଧରି । ବର୍ତ୍ତମାନର ରାଜନୈତିକ ଘନଘଟା ସମୟରେ ତାଙ୍କର ଉପସ୍ଥିତି ଓ ଦୂରଦର୍ଶନ ଏକାନ୍ତ ଆବଶ୍ୟକ ଥିଲାବେଳେ, ତାଙ୍କର ବିୟୋଗ ଦେଶ ଓ ରାଜ୍ୟ ପାଇଁ ଅପୂରଣୀୟ କ୍ଷତି ଘଟାଇଛି । ଏହି ଦାରୁଣ ଶୋକାବହ ଘଟଣାରେ ମୁଁ ରାଜ୍ୟ ବାସୀଙ୍କ ସହ ପରଲୋକ ଗତ ଆତ୍ମା ଉଦ୍ଦେଶ୍ୟରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ଓ ଶୋକ

ସମସ୍ତ ପରିବାରବର୍ଗଙ୍କୁ ମୋର ଗଭୀର ସହାନୁଭୂତି ଓ ସମ-
ବେଦନା ଜଣାଉଛି ।”

ରାଷ୍ଟ୍ରପତିଙ୍କ ବିଜୁ ପଟ୍ଟନାୟକଙ୍କ ବିୟୋଗରେ ‘ଜ୍ଞାନପୀଠ’
ପୁରସ୍କାର ବିଜେତା କବି ଡ଼ଃ କେଦାର ନାଥ ଦାସ ହାତ ପାରତୀ ଗଭୀର ଶୋକ
ପ୍ରକାଶ କରି ତାଙ୍କ ଶୋକ ବାର୍ତ୍ତାରେ କହିଛନ୍ତି, ‘ଓଡ଼ିଶାର
ଋତୁରାଜ ବସନ୍ତ ଆଉ ନାହିଁ । ବିଜୁବାବୁ ଥିଲେ ଜଣେ ଅକୃତ୍ରିମ
ଯୋଦ୍ଧା । ସେ ତାଙ୍କର ପ୍ରିୟ କଳିଙ୍ଗକୁ ସବୁ ଦିଗରୁ ଋଦ୍ଧିମନ୍ତ
କରିବାରେ ଲାଗି ପଡ଼ିଥିଲେ । ଶିଳ୍ପ, ବାଣିଜ୍ୟ ଓ ରାଜନୀତି
କ୍ଷେତ୍ରରେ ସେ ଓଡ଼ିଶାକୁ ଅଗ୍ରସର କରାଇବାକୁ ସଂକଳ୍ପ କରିଥିଲେ ।
ତାଙ୍କର ଆଗ୍ରହ ଓ ଉତ୍ସାହର ଆତିଶଯ୍ୟ କେତେକ ମହଲରେ
ପାଗଳ ପଣିଆ ବୋଲି କୁହା ଯାଉଥିଲା । କିନ୍ତୁ ବିଜୁବାବୁ ଥିଲେ
ଓଡ଼ିଶାର ଏକମାତ୍ର ଲୋକ, ଯାହାଙ୍କର ‘ପାଗଳ ପଣିଆ’ ମଧ୍ୟ
ସମସ୍ତଙ୍କୁ ଭଲ ଲାଗୁଥିଲା । ସେ ପାରାଦ୍ୱୀପ ବନ୍ଦର ଗଢ଼ିଥିଲେ ।
ଆହୁରି କେତେ କଣ ସ୍ୱପ୍ନ ଦେଖିଥିଲେ । ତାଙ୍କୁ ହରାଇ ଆଜି ଆମେ
ଅସହାୟ ବୋଧ କରୁଛୁ । ତାଙ୍କ ଆତ୍ମାର ସଦଗତି ହେଉ,
ଏହାହିଁ ମୋର ଅନ୍ତରର ପ୍ରାର୍ଥନା ।

# ବିଜୁ ପଟ୍ଟନାୟକଙ୍କ ଶେଷକୃତ୍ୟ

ଶୋକାକୁଳ ପରିବେଶରେ ବିଜୁ ପଟ୍ଟନାୟକଙ୍କ ଶେଷକୃତ୍ୟ ପୁରୀ ସ୍ୱର୍ଗଦ୍ୱାରରେ କରାଯାଇଥିଲା । ମହାନାୟକଙ୍କ ଅନ୍ତିମ ଦର୍ଶନ ପାଇଁ ପୁରୀରେ ରଥଯାତ୍ରାର ଭିଡ଼ ଦେଖା ଯାଇଥିଲା ।

ତା୧୮।୪।୧୯୯୭ ରିଖ ଅପରାହ୍ଣ ପାଞ୍ଚଟା ପଚିଶ ମିନିଟରେ ବିଜୁ ପଟ୍ଟନାୟକଙ୍କ ଜ୍ୟେଷ୍ଠ ପୁତ୍ର ପ୍ରେମ ପଟ୍ଟନାୟକ ତାଙ୍କ ଆଦରର ପିତାଙ୍କୁ ମୁଖାଗ୍ନି ଦେବାବେଳେ ସ୍ୱର୍ଗଦ୍ୱାର ବେଳାଭୂମିରେ ସୂର୍ଯ୍ୟ ଅସ୍ତ ହୋଇ ଆସୁଥିଲେ । ଏଣେ ଚନ୍ଦନ କାଠରେ ଗୁଆଘିଅ ପଡ଼ିବା ମାତ୍ରେ ସ୍ୱର୍ଗଗତ ଯୁଗ ପୁରୁଷଙ୍କ ଚିତା ଲେଲିହାନ ଶିଖାରେ ହୁ ହୁ ହୋଇ ଜଳିବା ମାତ୍ରେ, ତେଣେ ସୂର୍ଯ୍ୟ ସଙ୍ଗେ ସଙ୍ଗେ ଲୁଚିଗଲେ ।

ସତେ ଯେମିତି ଓଡ଼ିଶାର ସୂର୍ଯ୍ୟ ଅସ୍ତମିତ ହୋଇଗଲା ।

ବିସ୍ତୀର୍ଣ୍ଣ ବେଳା ଭୂମିରେ ଲକ୍ଷ ଲକ୍ଷ ଲୋକ ଥାଇ ମଧ କିଛି କରି ନ ପାରି ଅସହାୟ, ନିର୍ବାକ, ନିଶ୍ଚଳ ହୋଇ ରହିଗଲେ ।

ଉପସ୍ଥିତ ରାଜନୈତିକ ଅସ୍ଥିରତାକୁ ପଛରେ ପକାଇ ତିନିଜଣ ପୂର୍ବତନ ପ୍ରଧାନ ମନ୍ତ୍ରୀ ଏଚ୍. ଡ଼ି. ଦେବେଗୌଡ଼ା, ଅଟଳ ବିହାରୀ ବାଜପେୟୀ ଓ ଚନ୍ଦ୍ରଶେଖର, ପୂର୍ବତନ ଉପ-ପ୍ରଧାନମନ୍ତ୍ରୀ ଚୌଧୁରୀ ଦେବୀଲାଲ, ବି. ଜେ. ପି. ସଭାପତି ଶ୍ରୀ ଏଲ୍. କେ. ଆଡ଼ଭାନୀ, ଜନତାଦଳର ପୂର୍ବତନ ସଭାପତି ତଥା ବିହାର ମୁଖ୍ୟମନ୍ତ୍ରୀ ଶ୍ରୀ ଲାଲୁ ପ୍ରସାଦ ଯାଦବ ଆଦି ବରିଷ୍ଠ ନେତାମାନେ ଦିଲ୍ଲୀରୁ ଆସି ଦେଶର ବରିଷ୍ଠ ରାଷ୍ଟ୍ରନୀତିଜ୍ଞଙ୍କୁ ସେମାନଙ୍କର ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ ।

ଅସଂଖ୍ୟ ଭାବ ବିହ୍ୱଳିତ ଜନତା ସର୍ବ ସମୟ ଧରି ଶିତା ଚାରିକଡ଼େ ଲହଙ୍ଗ ଭାଙ୍ଗୁଥିଲେ ଓ କହୁଥିଲେ—

'ବିଜୁ ପଟ୍ଟନାୟକ ଅମର ରହେ,' "ଜବ୍‌ତକ୍ ସୂରଜ ଚାନ୍ଦ୍ ରହେଗା— ବିଜୁ ତେରା ନାମ ରହେଗା ।"

ବିଜୁ ପଟ୍ଟନାୟକଙ୍କ ବଡ଼ ପୁଅ ପ୍ରେମଙ୍କ ବ୍ୟତୀତ ସାନପୁଅ ନବୀନ ଓ ଝିଅ ଗୀତା ଅତ୍ୟନ୍ତ ଶୋକାଭିଭୂତ ଅବସ୍ଥାରେ ଚିତା ପାଖରେ ଉପସ୍ଥିତ ଥିଲେ ।

ବିଜୁ ପଟ୍ଟନାୟକଙ୍କ ମର ଶରୀରକୁ ଭୁବନେଶ୍ୱରରୁ ପୁରୀ ଅଣାଯିବା ବାଟରେ ଲୋକଙ୍କର ନାହିଁ ନ ଥିବା ଭିଡ଼ ପରିଲକ୍ଷିତ ହୋଇଥିଲା । ବିଭିନ୍ନ ସ୍ଥାନରେ ଲୋକେ ସେମାନଙ୍କ ପ୍ରିୟ ନେତାଙ୍କ ଫଟୋ ରାସ୍ତା କଡ଼ରେ ବା ଛକରେ ରଖି ଧୂପଦୀପ ଦେଇ ପୂଜା କରିବାର ପରିଲକ୍ଷିତ ହୋଇଥିଲା । ଶବାଧାର ପହଞ୍ଚିବା ମାତ୍ରେ ଲୋକେ ପାଗଳ ଭଳି ଗାଡ଼ି ନିକଟକୁ ଛୁଟି ଆସିଥିଲେ । ମହିଳାମାନେ ଶଙ୍ଖ ବଜାଇ ହୁଳହୁଳି ପକାଇବା ବେଳେ ଶ୍ରେଷ୍ଠ ପିଲା ଓ ପୁରୁଷମାନେ ଶବାଧାର ଉପରକୁ ଅବିର ଓ ଫୁଲ ପକାଇଥିଲେ ।

ଉତ୍ତରାଞ୍ଚଳ, ପିପିଲି, ବୀର ପୁରୁଷୋତ୍ତମପୁର, ସାତଶଙ୍ଖ, ସାକ୍ଷୀ ଗୋପାଳ ଓ ଚନ୍ଦନପୁର ଆଦି ସ୍ଥାନରେ ପ୍ରବଳ ଭିଡ଼ ହୋଇଥିଲା ।

ପୁରୀ ଡାକ୍ତରଖାନା ଛକରେ ଗାଡ଼ି ପହଞ୍ଚି, ବିଜୁବାବୁଙ୍କ ପ୍ରିୟ କାଳିଆଙ୍କ ଦର୍ଶନ ପାଇଁ ଶ୍ରୀଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଯାଏ ତାଙ୍କୁ ଅଣାଯିବା ବେଳେ ଶ୍ରୀଗୁଣ୍ଡିଚା ଯାତ୍ରା ଭଳି ବଡ଼ଦାଣ୍ଡ ଲୋକାରଣ୍ୟରେ ଭରପୂର ହୋଇ ଯାଇଥିଲା ।

ସିଂହଦ୍ୱାର ଠାରେ ମନ୍ଦିରରୁ ଏକ ନେତ ଓ ଜ୍ୱଳନ୍ତ ଧୂପ ଅଣାଯାଇ ଶବାଧାରରେ ରଖି, ପୁଣି ପଛକୁ ଫେରି, ଭି. ଆଇ. ପି. ରୋଡ଼ ବାଟେ ସ୍ୱର୍ଗଦ୍ୱାରରେ ପହଞ୍ଚିବା ଯାଏ ଚତୁଃପାର୍ଶ୍ୱରେ ଲୋକାରଣ୍ୟ ପରିଲକ୍ଷିତ ହୋଇଥିଲା ।

ବିଜୁବାବୁଙ୍କ ଉଲ୍ଲେଖଯୋଗ୍ୟ ଅବଦାନ ପାଇଁ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରିଥିବା ଇଣ୍ଡୋନେସିଆର ସରକାର ପ୍ରତିନିଧି ମଧ୍ୟ ପୁରୀରେ ପହଞ୍ଚି ଶେଷକୃତ୍ୟରେ ଯୋଗ ଦେଇଥିଲେ ।

ପ୍ରାରମ୍ଭରେ କମାଣର ଆୱାଜ ଓ ବନ୍ଧୁକ ଚଳାଇ କରି ପୁଲିସ୍ ବାହିନୀ ସମ୍ମାନ ପ୍ରଦର୍ଶନ କରିଥିଲେ ।

ରାଷ୍ଟ୍ରୀୟ ମର୍ଯ୍ୟାଦା ସହିତ ବିଜୁବାବୁଙ୍କର ଅନ୍ତିମ ସଂସ୍କାର କରାଯାଇଥିଲା ।

# ଭୁବନେଶ୍ୱରର ନବୀନ ନିବାସରେ
# ବିଜୁବାବୁଙ୍କ ଶେଷ ଦର୍ଶନ

୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖ ସକାଳେ ବିଜୁ ପଟ୍ଟନାୟକଙ୍କ ନୂଆ ଦିଲ୍ଲୀରେ ପରଲୋକ ଘଟିଲା ।

୧୭ ତାରିଖ ଦିନ ବିଜୁବାବୁଙ୍କ ଭୁବନେଶ୍ୱରସ୍ଥ 'ନବୀନ ନିବାସ'ରେ ତାଙ୍କ ପ୍ରତି ଶେଷ ସମ୍ମାନ ଜଣାଇବା ପାଇଁ ହଜାର ହଜାର ଲୋକଙ୍କ ସୁଅ ଛୁଟିଥିଲା । ଦିନ ପ୍ରାୟ ୧୧ଟା ବେଳେ ସେଠାରେ ଏତେ ଭିଡ଼ ହେଲା ଯେ, ଲୋକଙ୍କୁ ସମ୍ଭାଳିବା ପାଇଁ ପୁଲିସ୍‌କୁ ଅଧିକ ଫୋର୍ସ ମଗାଇ କର୍ଡ଼ନ୍‌ର ବ୍ୟବସ୍ଥା କରିବାକୁ ପଡ଼ିଥିଲା ।

'ଏ ଜନଗଣ ପୁତ୍ରର ମୃତ୍ୟୁ ନାହିଁ, ଶିରୋନାମାରେ ଶ୍ରୀ ଦେବପ୍ରସାଦ ମିଶ୍ର ( ସମାଜ ତା୨୦।୪।୧୯୯୭ ) ଏକ ହୃଦୟ ବିଦାରକ ଦୃଶ୍ୟ ଉପସ୍ଥାପନ କରିଥିଲେ । ସେ ଲେଖିଥିଲେ, ସେହି ଭିଡ଼ ଭିତରୁ ଜଣେ ୮୦ରୁ ଊର୍ଦ୍ଧ୍ୱ ବୟସ୍କା ବୁଢ଼ୀ, ଅଣ୍ଟାଠାରୁ ନୁଆଁ ନଇଁ ଯାଇଛି ବାଡ଼ିଖଣ୍ଡେ ଧରି ଠୁକୁ ଠୁକୁ ହୋଇ ଏକାକୀ ଚାଲିଛି ତା ପୁଅକୁ ଦେଖିବ ବୋଲି । ବାଟସାରା ଲୋକେ ତାକୁ କହୁଛନ୍ତି, ଏ ବୁଢ଼ୀ, କାହିଁକି ସେ ଆଡ଼େ ଯାଉଛୁ ? ପୁଲିସ ଲାଠିଚାର୍ଜ କରୁଛି ! କିଏ କହୁଛି, ଦଳା ଚକଟା, ଠେଲା ପେଲରେ ମରିଯିବୁ ଲୋ !

ଏ ସବୁ ସତ୍ତ୍ୱେ ସେ ବୁଢ଼ୀଙ୍କ ଖବରରେ ଚାଲିଥାଏ 'ନବୀନ ନିବାସ' ଆଡ଼କୁ । ଗେଟ୍ ପାଖର ଦଳା ଚକଟା ଉପରେ ଭେଣ୍ଡିଆ-ମାନେ ପଛରେ ରହିଲେ; କିନ୍ତୁ ସେ ଚାଲି ଆଗରେ । ବହୁ ଘାତ

ଦୁର୍ଘଟଣାରେ ବୁଢ଼ୀଟି ପହଞ୍ଚିଲା ନବୀନ ନିବାସ ଭିତରେ ।
ସେଠାରେ ପୁଲିସବାଲାଙ୍କଠାରୁ ମଧ୍ୟ ନିସ୍ତାର ହେଲା; କିନ୍ତୁ ସେ
ତାର ଜିଦ୍ ଛାଡ଼ିଲା ନାହିଁ । ଥକ୍କା ମାରି ବସି ପଡ଼ିଲା ମରି ଶରୀର
ଥୁଆ ହୋଇଥିବା ସ୍ଥାନଠାରୁ ଦୂରରେ, ଯେଉଁଠାରେ କଫିନ
ରହିଥିଲା ।

ସେଠାରେ ଲୋକେ ତାକୁ ପଚାରିଲେ, ତୁ କେମିତି ଆସିଲୁ
ଆ ଭିତରକୁ ?

ସେ କହିଲା, ମୁଁ ସକାଳ ୬ଟାରୁ ବାହାରିଛି ପୁଅଟାକୁ
ଦେଖିବ ବୋଲି । କାଲିଠାରୁ ମୋ ପୁଅ ମରିଛି କି ନାହିଁ ଖବର
ନିକି ଆମ ଗାଁରେ କହିଲା ପରେ, ମୁଁ ପ୍ରକୃତରେ ସେ ମରିଛି କି
ନାହିଁ ଜାଣିବା ପାଇଁ ଆସିଛି ।

ତୁ କାହିଁକି ଏତେ କଷ୍ଟ କରୁଛୁ, ତୁଣି ଏଠାରୁ ଯିବୁ କେମିତି,
ତୋର ସେ କଣ ହେଉଛି ?

ମୋର ସିଏ ଯାହା ହେଉଛି ତୁ କ'ଣ ଜାଣିବୁ ? ମୋ ପାଇଁ ସିଏ
ମୋର ବଡ଼ ପୁଅ !

ସେହି ସମୟରେ କିଏ କହିଲା, ପୁଲିସ୍‌ବାଲା ବ୍ୟବସ୍ଥା କଲେଣି,
ଯା, ଭଲରେ ତୋ ପୁଅକୁ ଦେଖିବୁ ।

ବୁଢ଼ୀଟି ବହୁ ଅନୁନୟ ବିନୟ କଲାରୁ କେତେକ ଜନତା
ଦଳର ଯୁବକ, ଯେଉଁମାନେ କି ସେଠାରେ ଶାନ୍ତି ଶୃଙ୍ଖଳା
ରକ୍ଷା କରୁଥିଲେ, ତାକୁ ନେଇ କଫିନ୍ ପାଖରେ ପହଞ୍ଚାଇ ଦେଲେ ।

କଫିନ୍ ଉପରେ, ମା ଯେପରି ପୁଅକୁ ଗେଲ କରେ,
ସେପରି ବୁଢ଼ୀଟି ଗେଲ କରି, କାନି ଭିତରୁ ତୁଳସୀ ପତ୍ରର
ଗୋଟେ ଗୁଡ଼ୁମାଳ ଦେଇ କହିଲା, ତୁ ମୋତେ ବଞ୍ଚାଇଲୁ, ମୋ

ପରିବାରକୁ ବଞ୍ଚାଇଲୁ, ମୁଁ ତୋ ପାଇଁ ଦୁଇଦିନ ହେଲା ଆଣ୍ଟେସ୍ତ୍ରିଲ-ମଣି ମେଳା କରୁଛୁ, ତୁ ଶୁଣିଗଲୁ !

ଘଟଣାଟି ହେଲା, ଯେଉଁଠାରେ ଆନ୍ତର୍ଜାତିକ ବିମାନ ଘାଟି ହେବ ବୋଲି ଘର ଓ ଝୁମ୍ପୁଡ଼ି ବସ୍ତି ଉଚ୍ଛେଦ କରାଗଲା, ସେଠାରେ ବୁଢ଼ୀର ଝୁମ୍ପୁଡ଼ି ଘର ଥିଲା । ତା ଘର ଭଙ୍ଗା ଗଲା-ବେଳେ, ସେ ଆସି ବିଜୁବାବୁଙ୍କୁ ଦେଖାକରି କହିଲା, ମୋ ଘର ଭାଙ୍ଗିଗଲା । ମୁଁ କେମିତି ଚଳିବ ? ତାର ପୁଅ ରିକ୍ସା ଟାଣୁଥିଲା ।

ବିଜୁବାବୁ ତା ପାଇଁ ବାର୍ଦ୍ଧକ୍ୟ ଭତ୍ତା ସହିତ, ତା ପୁଅ ପାଇଁ ଗୋଟିଏ ରିକ୍ସା କରି ଦେଇଥିଲେ ଏବଂ ତାର ଅଭାବ ପଡ଼ିଲେ ନବୀନ ନିବାସକୁ ଯାଇ ସେଠାରୁ ଚାଉଳ ପତ୍ର ଓ ଟଙ୍କା ସାହାଯ୍ୟ ଆଣୁଥିଲା ।

ବୁଢ଼ୀ କହିଲା, ମୁଁ ଏ ଫାଟକ ପାଖକୁ ଆସିଲେ ପୁଅ ଜାଣେ ଏବଂ କହେ, ଗୁଡ଼ିଦିଅ । ମୁଁ ଯାହା କହେ, ସେ ମୋ କଥା ଶୁଣେ ଏବଂ ମୋର ସବୁ କାମ କରିଦିଏ । ଆଉ ସେତ ଗଲା, ମୋର ଆଉ କେତେ ଦିନ ?

ତା ପରେ ବୁଢ଼ୀ ପଚାରିଲା, ବାପା ସ୍ବାକୁ କେଉଁଠାକୁ ନେବ ? ମୁଁ ଯାଇ ପାରିବିକ ?

ସେଠାରେ ଉପସ୍ଥିତ ଥିବା ଲୋକଙ୍କ ଆଖିରୁ ଲୁହ ଗଡ଼ି ପଡ଼ିଲା ।

ବୁଢ଼ୀଟିର ନାମ ସୀତା ବେଓ୍ବା । ଘର ବାଲେଶ୍ବର ଜିଲ୍ଲାର ସୋରରେ । ସେ ରହେ କୃଷି ବିଶ୍ବ ବିଦ୍ୟାଳୟ ପାଖରେ ଏକ ଝୁମ୍ପୁଡ଼ିରେ ।

ଏହିପରି ଥିଲେ ମହାନାୟକ ବିଜୁ ପଟ୍ଟନାୟକ !

# ଇଣ୍ଡୋନେସିଆର 'ଭୂମିପୁତ୍ର' ବିଜୁ

ଇଣ୍ଡୋନେସିଆର ୫୦ ତମ ସ୍ୱାଧୀନତା ଦିବସ ଅବସରରେ ବିଜୁ ପଟ୍ଟନାୟକଙ୍କୁ ୧୯୯୫ ମସିହା ଅଗଷ୍ଟ ମାସରେ ସେ ଦେଶର ଅନ୍ୟତମ ଶ୍ରେଷ୍ଠ ସମ୍ମାନ 'ବିନତଙ୍ଗ ଯଶ ଉତ୍ତମ' ଉପାଧିରେ ଭୂଷିତ କରାଯାଇଥିଲା । ଜାକର୍ତ୍ତାରୁ ଏହି ସମ୍ମାନ ଗ୍ରହଣ କରି ଫେରିବା ପରେ ତାଙ୍କୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ସମ୍ବର୍ଦ୍ଧନା ଦିଆଯାଇଥିଲା ।

କଟକର ଶହୀଦ ଭବନ ଠାରେ ୧୯୯୫ ମସିହା ଅକ୍ଟୋବର ୧୧ ତାରିଖ ସନ୍ଧ୍ୟାରେ ଏକ ସମ୍ବର୍ଦ୍ଧନା ସଭାରେ ବିଜୁ ପଟ୍ଟନାୟକ ତାଙ୍କ ଇଣ୍ଡୋନେସିଆ ଗସ୍ତ ସମ୍ପର୍କରେ ଯାହା କହିଥିଲେ, ତାହା ସଂଗ୍ରହ କରିଯାଇ ନିମ୍ନରେ ପରିବେଷଣ କରାଗଲା ।

"ବାଲିଯାତ୍ରା ଉତ୍ସବରୁ ପ୍ରଥମେ କଳିଙ୍ଗର ଇତିହାସ ଜାଣିଲି ବାପାଙ୍କ ଠାରୁ ।

ଅତୀତରେ ଓଡ଼ିଆ ସାଧବମାନେ ବେପାର ବଣିଜ କରିବାକୁ ବୋଇତରେ ଜାଭା, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓ ଆଦି ଦ୍ୱୀପକୁ ଯାଉଥିଲେ । ସେତେବେଳେ କଳିଙ୍ଗର ରାଜଧାନୀର ନାମ ଥିଲା ଶ୍ରୀବିଜୟ ପତ୍ତନ ।

ଏହାଗଲା ପିଲାଦିନର କଥା । ସେତେବେଳେ ମୁଁ ବାଲିଦ୍ୱୀପ ବିଷୟରେ ଧାରଣା କଲି ।

୧୯୪୭ ମସିହାର କଥା । ନୂଆଦିଲ୍ଲୀଠାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଏସୀୟ ସମ୍ମିଳନୀ ( ଏସିଆନ୍ କନ୍‌ଫରେନ୍‌ସ )

ଆୟୋଜିତ ହୋଇଥିଲା । ଦକ୍ଷିଣ ଏସୀୟ ବନ୍ଧୁଙ୍କ ସମେତ ଚୀନ ଓ ଜାପାନ ତଥା ଆଫ୍ରିକାର ବହୁଦେଶ ଏଥିରେ ଯୋଗ ଦେଇ-ଥିଲେ । ବିଭିନ୍ନ ଦେଶର ଯେଉଁସବୁ ଉପନିବେଶ ଥିଲା, ସେହି ଉପନିବେଶର ନେତାମାନେ ଏଥିରେ ମୁଖ୍ୟତଃ ଯୋଗ ଦେଇଥିଲେ । ଏହି ସମ୍ମିଳନୀର ମୁଖ୍ୟ ବିଷୟ ବସ୍ତୁ ଥିଲା, ଆଜିର ନେତା ଆଗାମୀ କାଲିର ସରକାର ଗଢ଼ିବେ । Leaders of the day will be the government of tomorrow.

ସମ୍ମିଳନୀ ଅବସରରେ ନେତାମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଟେବୁଲ୍‌ର ବ୍ୟବସ୍ଥା ହୋଇଥାଏ । ମହାତ୍ମା ଗାନ୍ଧୀ, ଜବାହରଲାଲ୍ ନେହେରୁ ଓ ଅନ୍ୟାନ୍ୟ ତୁଙ୍ଗ ସ୍ତରୀୟ ନେତାମାନେ ଗୋଟିଏ ଦେଶର ଟେବୁଲ୍‌ରୁ ଆଉ ଗୋଟିଏ ଦେଶର ଟେବୁଲ୍‌କୁ ଯାଇ ସେ ସବୁ ରାଷ୍ଟ୍ରର ନେତା ଓ ପ୍ରତିନିଧିଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କର ସମସ୍ୟା ଓ ଭଲ ମନ୍ଦ ସମ୍ପର୍କରେ ପଚାରି ବୁଝୁ-ଥାନ୍ତି । ମୁଁ ସେମାନଙ୍କ ପଛେ ପଛେ ବୁଲୁଥାଏ । ଇଣ୍ଡୋନେସିଆ ଟେବୁଲ୍ ପାଖରେ ପଣ୍ଡିତ ନେହେରୁ କିଛି ସମୟ ଅଟକି ଗଲେ । ଜଣେ ଇଣ୍ଡୋନେସୀୟ ପ୍ରତିନିଧି ତାଙ୍କୁ କହିଲେ ଯେ, ଡଚ୍‌ମାନଙ୍କ କବଳରୁ ଉକ୍ତର ସୁଲତାନ ସାରିୟର୍‌ଙ୍କୁ କିପରି ଉଦ୍ଧାର କରାଯିବ । ନେହେରୁ ସବୁ ଶୁଣିଲେ, କିନ୍ତୁ ହଁ କହିଲେ ନାହିଁ କି ନାଁ କହିଲେ ନାହିଁ ।

ତା ପରେ ମୋ ଆଡ଼କୁ ବୁଲିପଡ଼ି ନେହେରୁ ଇଣ୍ଡୋନେସୀୟ ପ୍ରତିନିଧିଙ୍କୁ କହିଲେ, ଏଠି ଜଣେ ପାଇଲଟ୍ ଉପସ୍ଥିତ ଅଛନ୍ତି, ତାଙ୍କୁ ପଚାରନ୍ତୁ ସେ ସାହା ପାରିବେ । ( Here is a pilot, ask him if he can. ) ତାଙ୍କୁ ନେହେରୁ ଏ କଥା କହି ସାରିବା ପରେ ମୋତେ କହିଲେ, ଇନ୍‌କୋ ଜରା ମଦଦ୍ କରୋ । ତାପରେ

ଟସ ମୋତେ ଧୀରେ କହିଲେ, ଦେଖ ବନ୍ଧୁ, ଇଣ୍ଡୋନେସିଆର ନେତା ସୁକର୍ଣ୍ଣ କୁଆଡେ ଜାପାନର ଦଲାଲ୍ । ତେଣୁ ଏହା ସତ କି ମିଛ, ମୋତେ ବୁଝି କହିବ ।

ମୁଁ ପରେ ବୁଝିଲି ଯେ, ସୁକର୍ଣ୍ଣଙ୍କ ଉପରେ କିଛି ଲୋକଙ୍କର ଏକ ଅଯଥା ଧାରଣା ଥିଲା । ମୁଁ ଇଣ୍ଡୋନେସିଆ ଯାଇ ସୁଲତାନ ସାରିୟାର୍‌ଙ୍କୁ ଉଦ୍ଧାର କରିବା ପାଇଁ ହଁ ମାରିଲି । ଏକ ଡାକୋଟା ବିମାନରେ ମୁଁ ଇଣ୍ଡୋନେସିଆ ଅଭିମୁଖେ ଯାତ୍ରା କଲି । ସାଙ୍ଗରେ ଏକମାତ୍ର ସହଯାତ୍ରୀ ଥିଲେ ମୋର ପତ୍ନୀ ।

ଇଣ୍ଡୋନେସିଆର ରାଜଧାନୀର ନାମ ଥାଏ ସେତେବେଳେ 'ଜୋଗିଆ କର୍ତ୍ତା' ପରେ ଏହା 'ସଙ୍ଗ କର୍ତ୍ତା' ଏବଂ ଶେଷରେ 'ଜାକର୍ତ୍ତା' ନାମରେ ନାମିତ ହୋଇଛି ।

ଇଣ୍ଡୋନେସିଆ ବିମାନ ବାହିନୀର ମୁଖ୍ୟ ସେତେବେଳେ ଥିଆନ୍ତି ଏୟାର୍ ମାର୍ଶାଲ ଶୁଦ୍ଧ ବର୍ମା ।

ଇଣ୍ଡୋନେସିଆ ପ୍ରତିରକ୍ଷା ବାହିନୀ ସହିତ ଭାରତର ସେତେବେଳେ ଭଲ ସମ୍ପର୍କ ଥାଏ । ମୁଁ ଶୁଦ୍ଧ ବର୍ମାଙ୍କ ସହ ପରାମର୍ଶ କ୍ରମେ ୧୯୪୭ ଜୁଲାଇ ୨୨ ତାରିଖରେ ଜାକର୍ତ୍ତା ଗଲି । ସେଦିନ ପ୍ରବଳ ବର୍ଷା ହେଉଥାଏ । ମୁଁ ସୁକର୍ଣ୍ଣଙ୍କୁ ତାଙ୍କ ସୁମାତ୍ରାର ବୁକୁରଟିଙ୍ଗ ସ୍ଥିତ 'ଥାଏ ମାଉଣ୍ଟେନ୍' ଘାଟୀରେ ସାକ୍ଷାତ କଲି । ସେତେବେଳେ ସୁକର୍ଣ୍ଣଙ୍କ ପତ୍ନୀ ଫାତିମା ପ୍ରବଳ ଗର୍ଭ ଯନ୍ତ୍ରଣା ପାଉଥାନ୍ତି । ତେଣୁ ସୁକର୍ଣ୍ଣ ଚିନ୍ତିତ ଥାଆନ୍ତି । ମୋ ପହଞ୍ଚିବାର ଅଳ୍ପ ସମୟ ପରେ ଫାତିମା ଏକ କନ୍ୟା ସନ୍ତାନକୁ ଜନ୍ମ ଦେଲେ । ଏହି ଖବର ପାଇ ଆନନ୍ଦିତ ସୁକର୍ଣ୍ଣ ମୋତେ କହିଲେ ବନ୍ଧୁ, ତମେ ମୋ ନବଜାତ ଶିଶୁଟିକୁ ଏକ ସଂସ୍କୃତ ନାମ ଦିଅ । ମୁଁ ବେଶବେଶ ଓ

ପରିସ୍ଥିତିକୁ ବିଚାରକୁ ନେଇ ନବଜାତ କନ୍ୟାଟିର ନାମ ରଖିଲି 'ମେଘାବତୀ' ସୁକର୍ଣ୍ଣ ପୁତ୍ରୀ ।

ମେଘାବତୀ ଏବେ ଇଣ୍ଡୋନେସିଆର ଦ୍ୱିତୀୟ ସର୍ବବୃହତ୍ ଦଳର ଅଧ୍ୟକ୍ଷା ।

ଯୋଗିଆକର୍ତ୍ତାରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହେଉଥାଏ । ସେଠାରେ ସୁକର୍ଣ୍ଣ ଭାଷଣ ଦେଉଥାନ୍ତି । ମୁଁ ସେଠାକୁ ଗଲି । ମୁଁ ସୁକର୍ଣ୍ଣଙ୍କର ଇଣ୍ଡୋନେସିଆ ଭାଷାର ଭାଷଣ ବୁଝିପାରିଲି ନାହିଁ । କିନ୍ତୁ ଲୋକେ ମନ୍ତ୍ର ମୁଗ୍ଧ ହୋଇ ତାଙ୍କ ଭାଷଣ ଶୁଣୁଥାନ୍ତି । ସେ ସେତେବେଳେ ଡଚ୍ ଶାସନ ବିରୁଦ୍ଧରେ ପ୍ରତିରୋଧ ଆନ୍ଦୋଳନ ଚଳାଇଥାନ୍ତି । ସେହି ସଭାରେ ଲୋକଙ୍କର ବିପୁଳ ଉପସ୍ଥିତି ଏବଂ ସୁକର୍ଣ୍ଣଙ୍କ ପ୍ରତି ଥିବା ସେମାନଙ୍କର ସମର୍ଥନରୁ ନିଶ୍ଚିତ ହୋଇ ଗଲି ଯେ, ସୁକର୍ଣ୍ଣ ଜାପାନର ଏଜେଣ୍ଟ ବା ଦଲାଲ୍ ନୁହଁନ୍ତି । ସେ ପ୍ରକୃତରେ ନିଜ ଦେଶର ସ୍ୱାଧୀନତା ପାଇଁ ଲଢୁଛନ୍ତି ।

କେଇଦିନ ସୁକର୍ଣ୍ଣଙ୍କ ଆତିଥ୍ୟରେ ରହିଲି । ଅବଶ୍ୟ ମୋତେ ସତର୍କତାର ସହିତ ଚଳିବାକୁ ହେଉଥାଏ । କାରଣ ମୋ ଉପରେ ଡଚ୍ ସୈନ୍ୟଙ୍କର ନଜର ରହିଥାଏ ।

ସୁକର୍ଣ୍ଣ ସ୍ୱାମୀ ବିବେକାନନ୍ଦଙ୍କର ଜଣେ ଭକ୍ତ । ସେ ଜଣେ ଇଞ୍ଜିନିୟର ଓ ସ୍ଥପତି ଥିଲେ । ତାଙ୍କର ଉଚ୍ଚକୋଟୀର ସୌନ୍ଦର୍ଯ୍ୟ-ବୋଧ ମଧ୍ୟ ଥିଲା । ତାଙ୍କ ସହ ଆଲୋଚନା ହେଲା । ମୋ ସହ ଭାରତକୁ ଆସିବାକୁ ତାଙ୍କୁ ଅନୁରୋଧ କଲି । ସେ କିନ୍ତୁ ଆସିବାକୁ ମନା କଲେ ।

ଡଚ୍‌ମାନେ ବିଦ୍ରୋହୀଙ୍କ ସଦର କାର୍ଯ୍ୟାଳୟ ( ସୁକର୍ଣ୍ଣଙ୍କ-ଘାଟି ) ଆକ୍ରମଣ କରିବାର ଖବର ପାଇବା ପରେ ମୁଁ ସାରିୟର୍‌ଙ୍କୁ ସାଙ୍ଗରେ ଧରି ସିଙ୍ଗାପୁର ଅଭିମୁଖେ ଚାଲିଲି ।

ରାତିରେ ନିରବଚ୍ଛିନ୍ନ ସାଢ଼େ ଛଅ ଘଣ୍ଟା ବିମାନ ଚଳାଇ ସକାଳେ ସିଙ୍ଗାପୁରରେ ପହଞ୍ଚିଲୁ ।

ଖବର କାଗଜରେ ସମ୍ବାଦ ପ୍ରକାଶ ପାଇଲା, ବିଜୁ ପଟ୍ଟନାୟକ ଡଚ୍ ଅବରୋଧ ଭଙ୍ଗ କଲେ । ( Biju Pattnaik breaks Dutch Blocked ) ସେଠାରେ ତାଙ୍କୁ ଗୁଡ଼ ପୁର୍ତ୍ତି ସକାଶ୍ତ୍ର ଶକ୍ତ ନେଇ ବୁକୁରଟିଙ୍ଗ୍ ସୁମାତ୍ରା ଅଭିମୁଖେ ଦେଢ଼ଘଣ୍ଟା ବିମାନ ଚଳାଇଲି । ଉଭୟ ପାର୍ଶ୍ୱରେ ଡଚ୍ ବାୟୁସେନା ଘାଟି ଥିବାରୁ ବିପଦ ସବୁବେଳେ ରହିଥାଏ । ଯାହାହେଉ, ନିରାପଦରେ ସେଠାରେ ପହଞ୍ଚି ଡକ୍ଟର ମହମ୍ମଦ ହାଟାଙ୍କୁ ଉଦ୍ଧାର କଲି । ସେ ଇଣ୍ଡୋନେସିଆର ଆଜି ଜଣେ ନେତା ଓ ଉପରାଷ୍ଟ୍ରପତି ।

ସୁଲ୍‌ତାନ ସାରିୟର୍ ଓ ଡକ୍ଟର ହାଟାଙ୍କୁ ପିନାଙ୍ଗ ରେଙ୍ଗୁନ ବାଟ ଦେଇ କଲିକତା ଆଣିଲି ।

ସେତେବେଳେ ବିମାନ କେତେକ ସ୍ଥାନରେ ଯାଞ୍ଚ ହେଉଥାଏ । ହାଟାଙ୍କୁ ମୁଁ ଯାଞ୍ଚ ବେଳେ ଶପ୍ ଫ୍ଲାଇଟ୍ କ୍ଲର୍କ ଭାବରେ ପରିଚୟ କରାଇ ତାଙ୍କ ନାମ ଅବଦୁଲ୍ଲା ବୋଲି କହୁଥିଲି । [illegible] ବଡ଼ ଡୁପିଅର୍‌ରେ ଆସିବାକୁ ପଡୁଥାଏ । ସାରିୟର୍ ସେ ଦେଶର ପ୍ରଧାନମନ୍ତ୍ରୀ ଓ ହାଟା ଉପ ରାଷ୍ଟ୍ରପତି ଥିଲେ । କଲିକତା ଦେଇ ନୂଆ ଦିଲ୍ଲୀରେ ପହଞ୍ଚିବା ବେଳକୁ ରାତି ହୋଇ ଯାଇଥାଏ । ସାରିୟର ଓ ହାଟାଙ୍କୁ ଧରି ସିଧା ଗାଡ଼ିରେ ବିମାନ ଘାଟିରୁ ନେହେରୁଙ୍କ ଘରକୁ ଚାଲିଲି ।

ସେତେବେଳେ ନେହେରୁଙ୍କ ଘରେ ଅର୍ଦ୍ଦଳୀ, ଚପରାଶୀ କିମ୍ବା କୌଣସି ଲୋକ ନ ଥିଲେ । ମୁଁ ତାଙ୍କୁ ଉଠାଇ ମୋ ଗୁପ୍ତ ଅଭିଯାନ ( ସିକ୍ରେଟ ମିଶନ ) କଥା କହିଲି ।

ଅସମୟରେ ଦୁଇଜଣ ବିଦେଶୀ ନେତାଙ୍କୁ ଧରି ତାଙ୍କ ଘରେ ପହଞ୍ଚିଥିବାରୁ ନେହେରୁ ମୋ ଉପରେ ରାଗିଲେ । ତା ପରେ ନେହେରୁ ହାଟା ଓ ସାରିପୁରିଙ୍କ ସହ ଦୁଇଘଣ୍ଟା ଧାଏ ଆଲୋଚନା କଲେ । ଆଲୋଚନା ପରେ ନେହେରୁ ମୋତେ ଆସି କହିଲେ, ବୁଝିଲ ବିଜୁ, ଏ ସବୁ ଅତି ଗୁପ୍ତ ।

ସୁକର୍ଣ୍ଣଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ ପାଇଁ ମୋତେ ନେହେରୁ ଯେଉଁ ପରାମର୍ଶ ଦେଇଥିଲେ, ମୁଁ ତାହା ତାଙ୍କୁ ଜଣାଇଲି, ନେହେରୁଙ୍କୁ ମୋର ଉତ୍ତର ଥିଲା, ଭାରତ ପାଇଁ ମହାତ୍ମାଗାନ୍ଧୀ ଯାହା, ଇଣ୍ଡୋନେସିଆ ପାଇଁ ସୁକର୍ଣ୍ଣ ସେଇୟା । ଏହା ଶୁଣିବା ପରେ ନେହେରୁ ଚୁପ ରହିଥିଲେ ।

ହାଟାଙ୍କୁ ସୁମାତ୍ରାରୁ ଆଣିବା ବେଳେ ସୁକର୍ଣ୍ଣ ମୋତେ କହିଥିଲେ, ବିଜୁ ତାଙ୍କୁ ନିରାପଦରେ ପୁଣି ଆଣି ଛାଡ଼ି ଦେଇଯିବ । ସେତେବେଳେ ବଳଦେବ ସିଂହ ପ୍ରତିରକ୍ଷା ମନ୍ତ୍ରୀ ଥାଆନ୍ତି । ହାଟାଙ୍କୁ କଟ୍ଟି ଟଙ୍କା ଦିଆଗଲା । ତାଙ୍କୁ ପୁଣି ତାଙ୍କ ବୁକୁରଟିଙ୍ଗ୍ ସ୍ଥିତ 'ଥାଏ ମାଉଣ୍ଟେନ' ଘାଟିରେ ପହଞ୍ଚାଇଲି ।

ଆଉଥରେ ସୁକର୍ଣ୍ଣଙ୍କ ପାଖରେ ପହଞ୍ଚିଲି ବେଳେ ସେ ବିଦ୍ରୋହୀ ବାହିନୀ ଓ ବିଦ୍ରୋହୀ ସଦର କାର୍ଯ୍ୟାଳୟର ସେନାଧକ୍ଷ ( ଜେନେରାଲ୍ ) ଦାୟିତ୍ୱରେ ଥାଆନ୍ତି । ସୁହାର୍ତ୍ତୋ ସେତେବେଳେ ବିଦ୍ରୋହୀ ସାମରିକ ବାହିନୀର ମୁଖ୍ୟ । ସେତେବେଳକୁ ସୁକର୍ଣ୍ଣ ଚିନ୍ତିତ ଥାଆନ୍ତି । କାରଣ ଠିକ୍ ସେହି ସମୟରେ ନ୍ୟୁୟର୍କରେ

ଜାତିସଙ୍ଘ ନିରାପତ୍ତା ପରିଷଦର ବୈଠକ ଚାଲିଥାଏ । ସାତ ବର୍ଷ ଧରି ଚାଲିଥିବା ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନକୁ ସ୍ୱୀକୃତି ଦେଇ ସେ ଦେଶକୁ ସ୍ୱାଧୀନତା ଦେବା ଉପରେ ବିଚାର ଆଲୋଚନା ଆରମ୍ଭ ହୋଇଥାଏ । ୧୯୪୫ରେ ଇଣ୍ଡୋନେସିଆ ସ୍ୱାଧୀନ ହୋଇଥିଲେ ହେଁ, ଡଚ୍‌ମାନେ ସେଠାରେ ଆସ୍ଥାନ ଜମାଇ ରହିଥାନ୍ତି ଓ କ୍ଷମତା ହସ୍ତାନ୍ତର କରୁ ନଥାନ୍ତି । ସେତେବେଳେ ଭି.କେ. କୃଷ୍ଣମେନନ ଲଣ୍ଡନରେ ଭାରତର ହାଇ କମିଶନର୍ ଥାନ୍ତି । ତାଙ୍କ ଜରିଆରେ ଭାରତ ବ୍ରିଟେନ ଉପରେ ଚାପ ପକାଇଲା, କିନ୍ତୁ ସାର୍ ଷ୍ଟାଫୋର୍ଡ କ୍ରିପସ୍ ଏଥିରେ ରାଜିନାମା କଲେ । ତାଙ୍କର ଦୋମୁହାଁ ନୀତି ଫଳରେ ସାମାନ୍ୟ ଅସୁବିଧା ସୃଷ୍ଟି ହେଲା । ରାଜନୀତିରେ ଜୟ ପରାଜୟ କିଛି ନ ଥାଏ । ବଡ଼ କଥା ହେଲା କୌଶଳ । ସେ ଯାହାହେଉ, ଶେଷରେ ନିରାପତ୍ତା ପରିଷଦରେ ଚୀନ, ଫ୍ରାନ୍‌ସ ଓ ପୁରୁଷ ଚାପ ପକାଇବାରୁ ଇଣ୍ଡୋନେସିଆରୁ ଡଚ୍‌ମାନଙ୍କୁ ହଟାଇବା ପାଇଁ ପ୍ରସ୍ତାବ ଗୃହୀତ ହେଲା । ଏହା ଫଳରେ ଇଣ୍ଡୋନେସିଆ ସ୍ୱାଧୀନତା ହାସଲ କରି ଏକ ସାର୍ବଭୌମ ରାଷ୍ଟ୍ରର ମର୍ଯ୍ୟାଦା ଲାଭକଲା ।

୧୯୫୦ ମସିହାରେ ସେ ଦେଶର ଆନୁଷ୍ଠାନିକ ସ୍ୱାଧୀନତା ଉତ୍ସବ ଜାକର୍ତ୍ତା ଠାରେ ଆୟୋଜିତ ହେଲା । ଏହି ଉତ୍ସବରେ ଯୋଗ ଦେବାପାଇଁ ରାଷ୍ଟ୍ରପତି ସୁକର୍ଣ୍ଣ ଓ ତାଙ୍କ ପତ୍ନୀଙ୍କୁ ମୁଁ ତାଙ୍କର ଯୋଗ୍ୟାକର୍ତ୍ତା ସଦର କାର୍ଯ୍ୟାଳୟରୁ ଜାକର୍ତ୍ତାକୁ ମୋ ବିମାନ ଯୋଗେ ନେଲି ।

ମୁଁ ସେମାନଙ୍କୁ ସାହାଯ୍ୟ ସହଯୋଗ କରିଥିବାରୁ ସେମାନେ ମୋତେ 'ଭୂମିପୁତ୍ର' ସମ୍ମାନ, ଇଣ୍ଡୋନେସିଆର ସର୍ବଶ୍ରେଷ୍ଠ ଜାତୀୟ ସମ୍ମାନରେ ଭୂଷିତ କଲେ । ମୋତେ ଗୋଟିଏ

ପ୍ରାସାଦ, ତେଲ ଖଣି, କଞ୍ଚା ଜଙ୍ଗଲ ଏବଂ ସୁମାତ୍ରାରେ ଏକ ବନ୍ଦର ପୁରସ୍କାର ଆକାରରେ ଦେବାକୁ ଇଣ୍ଡୋନେସିଆ ମନ୍ତ୍ରିମଣ୍ଡଳ ଏକ ପ୍ରସ୍ତାବ ଗ୍ରହଣ କରିଥିଲେ । ମୋତେ ଯେତେ ଜିନିଷ ପୁରସ୍କାର ଆକାରରେ ମିଳୁଥିଲା, ତାହାର ମୂଲ୍ୟ ଥିଲା ପ୍ରାୟ ୧୦ ହଜାର କୋଟି ଟଙ୍କା ।

ମୋତେ ଯେତେବେଳେ ଏହି ପୁରସ୍କାର ଓ ଉପହାର ପ୍ରଦାନ କରିବା ନିମନ୍ତେ ବ୍ୟବସ୍ଥା କରାଗଲା, ମୁଁ ସେତେବେଳେ କହିଥିଲି, କଳିଙ୍ଗ ସମ୍ରାଟ କୌଣସି ଉପହାର ଗ୍ରହଣ କରନ୍ତି ନାହିଁ । ତେଣୁ କଳିଙ୍ଗର ସନ୍ତାନ ହୋଇ ମୁଁ ଏହା ଗ୍ରହଣ କରିବି କେମିତି ? ତାପରେ ମୁଁ ସେହି ପୁରସ୍କାର ବାବଦ ମିଳିଥିବା ସବୁ ସମ୍ପତ୍ତି ଇଣ୍ଡୋନେସିଆ ବାସୀଙ୍କୁ ନମ୍ରତାର ସହ ଫେରାଇ ଦେଇଥିଲି ।

କିନ୍ତୁ ଘଟଣାଚକ୍ରରେ ସୁକର୍ଣ୍ଣ ଏକଦା ଭାରତର ପରମ ଶତ୍ରୁ ପାଲଟି ଯାଇଥିଲେ । ତାଙ୍କୁ ବୁଝାଇବା ପାଇଁ ନେହେରୁ ମୋର ସାହାଯ୍ୟ ଲୋଡ଼ିଥିଲେ । ୧୯୫୮ ମସିହା କଥା । ଯୁଗୋସ୍ଲୋଭିଆର ବ୍ରିୟୋନି ଠାରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ସମ୍ପର୍କରେ ଆଲୋଚନା ପାଇଁ ୧୪ଟି ତୃତୀୟ-ବିଶ୍ୱ-ରାଷ୍ଟ୍ରର ନେତାମାନଙ୍କର ବୈଠକ ଅନୁଷ୍ଠିତ ହୋଇଥିଲା । ସେଥିରେ କୌଣସି ଏକ ପ୍ରସଙ୍ଗ ଉପରେ ନେହେରୁଙ୍କ ପ୍ରସ୍ତାବ ସହ ସୁକର୍ଣ୍ଣ ରାଜି ହେଲେ ନାହିଁ । ସେ ଅନ୍ୟ ଏକ ଦୃଷ୍ଟିକୋଣ ଉପସ୍ଥାପନ କରିବାରୁ ନେହେରୁ ବିରକ୍ତ ହୋଇ ସୁକର୍ଣ୍ଣଙ୍କୁ କହିଥିଲେ, ନିର୍ବୋଧଙ୍କ ଭଳି କଥାବାର୍ତ୍ତା କରନା ! ( Do not be foolish ). ସୁକର୍ଣ୍ଣ ବିଶେଷ ଅପମାନିତ ହୋଇ ଏହାର ପ୍ରତିଶୋଧ ନେବାକୁ ସୁଯୋଗର ଅପେକ୍ଷାରେ ଥିଲେ । ମୁଁ ଏ କଥା ଜାଣିବା ପରେ ନେହେରୁଙ୍କୁ କହିଥିଲି ।

ଚୀନ ୧୯୬୨ରେ ଭାରତ ଆକ୍ରମଣ କରିବାବେଳେ ସୁକର୍ଣ୍ଣ ଭାରତ ବିରୋଧରେ ଚୀନକୁ ସାମରିକ ସହାୟତା ଯୋଗାଇବାକୁ ନିଷ୍ପତ୍ତି ନେଲେ । ଏକଥା ଜାଣିବା ପରେ ସୁକର୍ଣ୍ଣଙ୍କୁ ବୁଝାସୁଝା କରାଇବା ପାଇଁ ନେହେରୁ ମୋ ସାହାଯ୍ୟ ଲୋଡ଼ିଥିଲେ । ସେହିଭଳି ଭାରତ ପାକିସ୍ଥାନ ଯୁଦ୍ଧବେଳେ ଭାରତୀୟ ବନ୍ଦରଗୁଡ଼ିକୁ ନଷ୍ଟକରି ଦେବାକୁ ଆୟୁବ ଖାଁ ସୁକର୍ଣ୍ଣଙ୍କୁ ସାମରିକ ସହାୟତା ମାଗିଥିଲେ । ସୁକର୍ଣ୍ଣ ଏଥିପାଇଁ ତିନୋଟି ବୁଡ଼ାଜାହାଜ ଓ ଗୋଟିଏ ମିଗ୍ ଯୁଦ୍ଧ ବିମାନ ପାକିସ୍ଥାନକୁ ପଠାଇବାକୁ ରାଜି ହୋଇଥିଲେ । ଏହା ଜାଣିପାରି ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀ ମୋତେ ସୁକର୍ଣ୍ଣଙ୍କ ପାଖକୁ ପଠାଇ ତାଙ୍କୁ ବୁଝାଇବାକୁ ଅନୁରୋଧ କରିଥିଲେ । ମୁଁ ଅଗତ୍ୟା ଜାକର୍ତ୍ତା ଯାଇ ସୁକର୍ଣ୍ଣଙ୍କୁ ଭେଟିଲି । ସେ ସବୁ କଥା ଶୁଣିଲେ । କିନ୍ତୁ ସେତେବେଳକୁ ବୁଡ଼ାଜାହାଜଗୁଡ଼ିକ ପାକିସ୍ଥାନ ଅଭିମୁଖେ ଯାତ୍ରା ଆରମ୍ଭ କରିସାରିଥାଏ । ସେ ମୋ ଅନୁରୋଧ ରକ୍ଷା କରିବା ଅବସ୍ଥାରେ ନଥିଲେ । ମୁଁ ତାଙ୍କୁ କହିଲି, ସୁକର୍ଣ୍ଣ, ତୁମ ଦେଶକୁ ରକ୍ଷା କରିବା ପାଇଁ ମୁଁ ମୋ ଜୀବନ ବିପନ୍ନ କରିଥିଲି । ତୁମେ ମୋ ଦେଶକୁ ଏହି ଘୋର ସଙ୍କଟ ସମୟରେ ସାହାଯ୍ୟ କରିବ 'ନାହିଁ ? ତାପରେ ସେ ତୁରନ୍ତ ବୁଡ଼ାଜାହାଜ ଫେରାଇ ଆଣିବାକୁ ଦେଶର ନୌବାହିନୀକୁ ନିର୍ଦ୍ଦେଶ ଦେଇଥିଲେ । ଭାରତ ପ୍ରତି ଦେଖା ଦେଇଥିବା ବିପଦକୁ ଟାଳି ଦିଆଯାଇଥିଲା ।

## ଏକବିଂଶ ଶତାବ୍ଦୀରେ ମୋ ସ୍ୱପ୍ନର ଓଡ଼ିଶା :

### ବିଜୁବାବୁଙ୍କ ଅଭିଭାଷଣର ନକଲ

ଜ୍ଞାନମଣ୍ଡଳ ଫାଉଣ୍ଡେସନ୍ "ବିନୋଦ କାନୁନ୍‌ଗୋ ସ୍ମାରକୀ ବକ୍ତୃତା ୧୯୯୨" ନିମନ୍ତେ ବିଜୁ ପଟ୍ଟନାୟକ ଯେଉଁ ଅଭିଭାଷଣ ଦେଇଥିଲେ, ତାହା ୨୭।୪।୧୯୯୨ ର 'ସମାଜ' ପୃଷ୍ଠାରେ ପ୍ରକାଶ ପାଇଥିଲା । ବିଜୁବାବୁଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ପାଠକ ପାଠିକାମାନଙ୍କୁ ଅବଗତ କରାଇବା ପାଇଁ ତାର ଅବିକଳ ନକଲ ନିମ୍ନରେ ଦିଆଗଲା ।

"ମୋତେ ଆଜି ଦାୟିତ୍ୱ ଦିଆଯାଇଛି ସ୍ୱପ୍ନ ଦେଖିବା ପାଇଁ, ତେଣୁ ମୋର ପ୍ରିୟ ଅନ୍ତରଙ୍ଗ ବନ୍ଧୁ ବିନୋଦ କାନୁନ୍‌ଗୋଙ୍କ ସ୍ମୃତିରେ ମୁଁ ଆଜି କିଛି କହିବି ନାହିଁ । କେବଳ ସ୍ୱପ୍ନ ହିଁ ଦେଖିବି ।

ମୋତେ କୁହାଯାଇଛି ଯେ, ମୁଁ ମୋ ସ୍ୱପ୍ନର ଓଡ଼ିଶାର ପରିକଳ୍ପନା ଏଠି ରଖିବି । କି ସ୍ୱପ୍ନ ଦେଖିବି ? ସେ ସ୍ୱପ୍ନର ଆକାର କ'ଣ ?

ଗୁରୁଦେବ ରବୀନ୍ଦ୍ରନାଥ ଠାକୁରଙ୍କର ଗୋଟିଏ ଉକ୍ତି ମୋର ମନେ ପଡ଼ିଯାଉଛି । ସେ କହିଥିଲେ, ଯଦି ସ୍ୱପ୍ନ ଦେଖୁଛ, ତେବେ ସବୁଠାରୁ ମହନୀୟ ତଥା ବିଶାଳ ସ୍ୱପ୍ନହିଁ ଦେଖ । କାରଣ କେବଳ ବିଶାଳ ସ୍ୱପ୍ନଦ୍ୱାରା ହିଁ ବିଶାଳ କାର୍ଯ୍ୟ ସାଧିତ ହୋଇ ପାରିବ ।

ଏ ପୃଥିବୀରେ ଶ୍ରେଷ୍ଠ ହେବାଟା ହେଲା ନିୟମିତ ନିୟମ । ଆମେ ସମସ୍ତେ ଜନ୍ମ ହୋଇଛୁ ମରିବା ପାଇଁ । ସ୍ୱପ୍ନ ଦେଖିଲା ବେଳେ ଜଣେ ସବୁଠାରୁ ବଡ଼ ତଥା ଉତ୍କୃଷ୍ଟ କଥାକୁ ହିଁ ସ୍ମୃତିରେ ଆଣେ । ସ୍ୱପ୍ନରେ ସବୁଠାରୁ ବଡ଼ ସ୍ୱପ୍ନଟିକୁ ହିଁ ଦେଖେ ।

ମୁଁ ରବି ଠାକୁରଙ୍କର ସେହି କଥାକୁ ଭୁଲି ପାରିନାହିଁ । ସେ କାଳର ତରୁଣମାନଙ୍କ ପାଇଁ ସ୍ୱପ୍ନ ଦେଖିବା ନିମନ୍ତେ ତାଙ୍କର ସେହି କଥା ପ୍ରେରଣା ଯୋଗାଇ ଦେଉଥିଲା ।

ମୁଁ ଯେତେବେଳେ ଓଡ଼ିଶାକୁ ନେଇ ସ୍ୱପ୍ନ ଦେଖିବାକୁ ବସୁଛି ସେତେବେଳେ କି ସ୍ୱପ୍ନ ମୁଁ ଦେଖିବି ?

ଓଡ଼ିଶା ଆଜି ଗୋଟିଏ ଅତି କ୍ଷୁଦ୍ର ସ୍ଥାନରେ ପରିଣତ ହୋଇ ଯାଇଛି । ଦିନ ଥିଲା, ଯେତେବେଳେ ସମଗ୍ର ଭାରତ ବର୍ଷରେ ଏହା ଥିଲା ସବୁଠାରୁ ବଡ଼ ସାମ୍ରାଜ୍ୟ । ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡାରଙ୍କ ବାହିନୀ ଓଡ଼ିଶାର ସୈନ୍ୟମାନଙ୍କ ହାତରେ ପରାଜୟ ସ୍ୱୀକାର କରିଥିଲେ । ସେମାନଙ୍କୁ ଓଡ଼ିଆ ସୈନିକ ଭାରତର ସୀମା ବାହାରକୁ ତଡ଼ି ଦେଇ ପାରିଥିଲା ।

କଳିଙ୍ଗ ଥିଲା ସେ କାଳର ଶ୍ରେଷ୍ଠ ନୌଶକ୍ତି । ପୃଥିବୀର ଇତିହାସରେ ସେ ଭଳି ଗୋଟିଏ ନୌସେନାର ଦୃଷ୍ଟାନ୍ତ ଦେଖିବାକୁ ମିଳୁ ନଥିଲା ।

ଓଡ଼ିଆ ସଭ୍ୟତା, କଳିଙ୍ଗ ସଭ୍ୟତା ଭାରତ ବର୍ଷରୁ ବାହାରି ସମଗ୍ର ଦକ୍ଷିଣ-ପୂର୍ବ ଏସିଆରେ ବ୍ୟାପି ଯାଇଥିଲା । ଆଜି ମଧ୍ୟ ସେ ଅଞ୍ଚଳର ଦେଶ ଗୁଡ଼ିକରେ ଏହାର ସ୍ମାରକୀ ବିଦ୍ୟମାନ । ଏହାର ଭଗ୍ନାବଶେଷର ପ୍ରମାଣ ମିଳୁଛି ।

ସେହି ସୁବର୍ଣ୍ଣ ଅତୀତର ସ୍ୱପ୍ନ ଅପେକ୍ଷା ଅଧିକ ଆନନ୍ଦଦାୟକ ସ୍ୱପ୍ନ କଥା ମୁଁ ଚିନ୍ତା ମଧ୍ୟ କରି ପାରୁନାହିଁ । ସେତେବେଳର କଳିଙ୍ଗ ସେତେବେଳର ଓଡ଼ିଶା ଥିଲା ସକ୍ଷମ, ଅନିବାର୍ଯ୍ୟ ତଥା ପ୍ରାଣବନ୍ତ । ଭାରତ ଭୂଖଣ୍ଡର ଶ୍ରେଷ୍ଠ ସାମ୍ରାଜ୍ୟ । ଓଡ଼ିଆ ନାବିକମାନଙ୍କ ପାଖରେ ଯାତ୍ରାପଥ ବୋଲି କିଛି ନଥିଲା । ଓଡ଼ିଆ ସେନାନୀ ଭୟ କ'ଣ ଜାଣି ନଥିଲା । କଳିଙ୍ଗ ସାମ୍ରାଜ୍ୟର ଧ୍ୱଜା ଅବନତ ହୋଇ ନଥିଲା । ଏ ଥିଲା ସେ ଯୁଗର କଳିଙ୍ଗ । ତେଣୁ ଯଶସ୍ୱୀ କଳିଙ୍ଗର ତାହା ହେଲା ଉପଯୁକ୍ତ ସ୍ୱପ୍ନ ।

ଏକବିଂଶ ଶତାବ୍ଦୀରେ ଓଡ଼ିଶା ପ୍ରଦେଶ, ଓଡ଼ିଶା ରାଜ୍ୟ କିପରି ହେବା ଉଚିତ, ତାର ମୁଁ ଯେଉଁ ସ୍ୱପ୍ନ ଦେଖୁଛି ତାହା ହେଲା — ମୋ ରାଜ୍ୟର ପ୍ରତ୍ୟେକଟି ନାରୀ ଓ ପୁରୁଷ ପାଇଁ ରାଜ୍ୟର ସ୍ୱାର୍ଥହିଁ ହେବ ସବୁବେଳେ ପ୍ରାଥମିକ । ନିଜ ସ୍ୱାର୍ଥକୁ ପଛରେ ରଖି ସେମାନେ ଓଡ଼ିଶାର ସ୍ୱାର୍ଥ ସାଧନ ନିମନ୍ତେ ବାହାରି ପଡ଼ିବେ । ସେମାନଙ୍କ ଭିତରେ ଭରି ରହିଥିବ ଆତ୍ମାଭିମାନ; ଆତ୍ମଗୌରବ । ନିଜ ଉପରେ ଥିବ ସେମାନଙ୍କର ଅଖଣ୍ଡ ଭରସା । ସେମାନେ ଅନ୍ୟ କାହାର ଦୟାର ପାତ୍ର ହୋଇ ରହିବୁ ନଥିବେ, କେବଳ ନିଜର ଅନୁକମ୍ପାର ପାତ୍ର ହୋଇଥିବେ । ସେମାନଙ୍କ ଦକ୍ଷତା, ବୁଦ୍ଧିମତ୍ତା ତଥା ମନ କଳିଙ୍ଗ ଇତିହାସର ମୋଡ଼ ବଦଳାଇ ଦେବ । ସେମାନେ ପୁଣି ସେହି ହୃତ ଗୌରବକୁ ଫେରାଇ ଆଣି ପାରିବେ ।

ଏକବିଂଶ ଶତାବ୍ଦୀର ମୋର ଓଡ଼ିଶାରେ ଥିବେ ଶ୍ରେଷ୍ଠଶିଳ୍ପୀ, ଭବ୍ୟ କାରିଗର ଓ ସ୍ଥପତି ତଥା ଶ୍ରେଷ୍ଠ ସଙ୍ଗୀତଜ୍ଞ ଓ କବି । ଏ କଥା ଭୁଲିଗଲେ ଚଳିବ ନାହିଁ ଯେ, ଆମେ ହିଁ ଗଢ଼ିଛୁ କୋଣାର୍କ । ଏହି ଓଡ଼ିଆ ବା କଳିଙ୍ଗ ମାଟିରେ ରଚିତ ହୋଇଛି ଗୀତ

ଗୋବିନ୍ଦ । ଏହି ହେଲ ସେହି ଦେଶ ଯେଉଁଠି ପଠାଣି ସାମନ୍ତଙ୍କ ଭଳି ମହାନ୍ ଗଣିତଜ୍ଞ ଜନ୍ମ ହୋଇଥିଲେ ଓ କୌଣସି ପ୍ରକାରର ଯନ୍ତ୍ରପାତିର ବିନା ସାହାଯ୍ୟରେ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଚମକ ସୃଷ୍ଟି କରିଦେଇ ପାରିଥିଲେ ।

ମୁଁ ଏଭଳି ଏକ ଓଡ଼ିଶାର ସ୍ୱପ୍ନ ଦେଖୁଛି, ଯେଉଁଠି ଥିବେ ଅସାମାନ୍ୟ ପ୍ରତିଭାଶାଳୀ ଗଣିତଜ୍ଞ, ବିଜ୍ଞାନୀ, ମହାନ୍ କଳାକାର, ନୃତ୍ୟ ପ୍ରତିଭା ଓ ସଙ୍ଗୀତଜ୍ଞ, ଶ୍ରେଷ୍ଠ ସ୍ଥପତି ତଥା ମହାନ୍ ସଂସ୍କୃତିର ବାହକ ହୋଇଥିବା ନାରୀ ଓ ପୁରୁଷ । ଏଇଟି ହେଲା ମୋ ଜୀବନର ସ୍ୱପ୍ନ । ମୋ ଜୀବନର ଶ୍ରେଷ୍ଠ ସ୍ୱପ୍ନ ।

ମୁଁ ଇଂରାଜୀରେ କହୁଛି । ସେ ଭାଷାରେ ଆମ 'କରୁଣା' ଶବ୍ଦର କିଛି ପ୍ରତିଶବ୍ଦ ନାହିଁ । ଜଣେ ତରୁଣୀ ଯେତେବେଳେ ତାର ଇଷ୍ଟ ଦେବଙ୍କୁ ପୂଜା କରୁଛି, ସେତେବେଳେ ଆଶୀର୍ବାଦ ଭିକ୍ଷାକରି କହିଥାଏ, ହେ ପ୍ରଭୁ, ମୋ ହୃଦୟକୁ କରୁଣାରେ ଭରି ଦିଅ । ମୁଁ ଅନ୍ୟ କିଛି ପାଇଁ ଅଳି କରୁ ନାହିଁ ।

ମୋ ସ୍ୱପ୍ନର ଓଡ଼ିଶାର ସଂସ୍କୃତିର ଏହି ଭାବଟି ହିଁ ହେବ ସାର, ତାର ସାମଗ୍ରିକ ପରିପ୍ରକାଶ ।

କି ପୁରୁଷ, କି ମହିଳା, ଆମେ ଆଜି ସମସ୍ତେ ସଙ୍କୁଚିତ । କୌଣସି ପ୍ରକାର ମହାନ୍ ଅଭିଳାଷ ପୋଷଣ ନ କରୁଥିବାରୁ ଆମକୁ କ୍ଷୁଦ୍ରତା ଗ୍ରାସ କରିଯାଇଛି । ଛୋଟ ଛୋଟ ସମସ୍ୟା, ଛୋଟ ଧରଣର ମାରି ପିଟ, ଛୋଟିଆ ଅନୁରାଗ ଓ ବିରାଗ, ଛୋଟିଆ ଲାଭ ବା କ୍ଷତି ହୋଇ ଯାଇଛନ୍ତି ଆମ ସହଚର ।

ଓଡ଼ିଶାର ପ୍ରଗତି ସାଧିତ ହୋଇ ପାରିବ କେବଳ ସାମୂହିକ ଇଚ୍ଛାଶକ୍ତି ବା ସଂକଳ୍ପ ଦ୍ୱାରା ।

ଆମର ପୂର୍ବ ପୁରୁଷ ଥିଲେ ମହାନ୍ । ଆମେ ସେମାନଙ୍କ ଦାୟାଦ ।

ଏଇ ଯେଉଁ ସୁନ୍ଦର ପର୍ବତ କଳନାଦୀ ନଦୀ, ପ୍ରଶାନ୍ତ ସମୁଦ୍ର ତଥା ସବୁଜିମା ଭରା ଅରଣ୍ୟ ମୁଁ ଦେଖୁଛି, ସେ ସବୁ ହେଲେ ଆମକୁ ଈଶ୍ୱରଙ୍କର ଅମୂଲ୍ୟ ଦାନ, ଆମ ଜାତିର ସମ୍ପତ୍ତି ।

ମୁଁ ଆଶା କରୁଛି ମୋ ଘର ଭଉଣୀମାନେ, ମୋ ରାଜ୍ୟର ତରୁଣ ପିଢ଼ି ଆଗାମୀ ବର୍ଷ ଗୁଡ଼ିକରେ ଈଶ୍ୱରଙ୍କର ଏହି ଦାନକୁ ଉପଯୁକ୍ତ ଭାବେ କାମରେ ଲଗାନ୍ତୁ ।

ଏଭଳି କଳ କାରଖାନା ସବୁ ବସାନ୍ତୁ ଯାହା ସମସ୍ତଙ୍କ ପାଇଁ ଐଶ୍ୱର୍ଯ୍ୟ ଆଣି ଦେବ, ସମସ୍ତଙ୍କୁ ଶିକ୍ଷା ତଥା କାମ ଯୋଗାଇ ଦେଇ ପାରିବ ।

ମୋ ସ୍ୱପ୍ନର ଓଡ଼ିଶାରେ କେବେ ହେଲେ ବର୍ଷାର କ୍ଷେତ ଶୁଖିଲା ପଡ଼ିବ ନାହିଁ । ଆମ ମାଟିରେ ଥିବା ପ୍ରତ୍ୟେକଟି ବୁନ୍ଦାଜଳ ତାର ସେହି କ୍ଷେତକୁ ଯେପରି ଶସ୍ୟ ଶ୍ୟାମଳା କରି ଗଢ଼ି ତୋଳିବାରେ ସାହାଯ୍ୟ କରିବ, ସେ ଦିଗରେ ଉଦ୍ୟମ କରିବାକୁ ହେବ ।

ଆଗାମୀ କାଲର ଓଡ଼ିଶାରେ ରୂପା ଗଳାରେ ବି କେହି କହୁ ନଥିବେ ଯେ ଜଣେ ମହିଳାଙ୍କ ପ୍ରତି ଅତ୍ୟାଚାର ହୋଇଛି ।

ନାରୀ ଓ ପୁରୁଷ ସମାନ ଅଧିକାର ପାଇଥିବା ଦିନ ମୁଁ ସ୍ୱପ୍ନ ଦେଖୁଛି । ସେମାନେ ସେତେବେଳେ ସମାନ କ୍ଷମତା ଓ ସୁଯୋଗର ଅଧିକାରୀ ହୋଇ ଉଠିଥିବେ ।

ଏକବିଂଶ ଶତାବ୍ଦୀର ମୋର ସ୍ୱପ୍ନର ଓଡ଼ିଶାରେ ମୋ ରାଜ୍ୟର ଜଣେ ହେଲେ ଶିଶୁ ଭୋକିଲା ନ ଥିବ କିମ୍ବା ଅପୁଷ୍ଟି ଦୋଷରୁ କଷ୍ଟ ଭୋଗ କରୁନଥିବ ।

ମୋ ମାତୃଭୂମିରେ ସେତେବେଳକୁ ନ ଥିବ ନିରକ୍ଷରତା, ନା ଥିବ ଅଜ୍ଞତା ।

ମୋ କୃଷିଜୀବିମାନଙ୍କ ପାଇଁ ମୁଁ ସ୍ୱପ୍ନ ଦେଖୁଛି ଯେ, ପାଣି ଅଭାବରୁ ସେମାନଙ୍କ କ୍ଷେତ ଫସଲ କେବେ ଉଜୁଡ଼ି ଯାଉ ନଥିବ । ପ୍ରତ୍ୟେକଟି ବୁନ୍ଦା ପାଣିକୁ ଧରି ରଖି ଉପଯୁକ୍ତ ଭାବରେ ବିନିଯୋଗ କରାଯାଇ ପାରୁଥିବ ।

ଯେଉଁ ପ୍ରାକୃତିକ ଦୁର୍ବିପାକକୁ ଓଡ଼ିଶା ପାଇଁ ମହା ବିପତ୍ତି ବୋଲି ମୂଳରୁ ଧରାଯାଇ ଆସିଛି, ସେ ସବୁ ସେତେବେଳକୁ ଅତୀତର କଥା ହୋଇ ଉଠିଥିବ ।

ଓଡ଼ିଶାର ସବୁଯାକ ନଦୀକୁ ବଶ୍ୟ କରି ଦିଆଯିବ, ସବୁ ଜଳ ଭଣ୍ଡାରକୁ ସଜାଡ଼ି ଦିଆଯିବ । ତେଣୁ ଶୁଖିଲା କ୍ଷେତରେ ଆବଶ୍ୟକ ବେଳେ ପାଣି ମଡ଼ାଇ ଦେଇ ହେବ ।

ଗତକାଲି ମୁଁ ଆଦିବାସୀମାନଙ୍କ ଉପରେ ହେଉଥିବା ଗୋଟିଏ ପ୍ରଦର୍ଶନୀକୁ ଉଦ୍‌ଘାଟନ କରିବାକୁ ଯାଇଥିଲି, ଆପଣ-ମାନଙ୍କ ଭିତରୁ ଯେଉଁମାନେ ସେଠିକି ଯାଇ ନାହାନ୍ତି, ସେମାନଙ୍କୁ ମୁଁ ଅନୁରୋଧ କରିବି, ସେଠି କିଛି ସମୟ କଟାଇ, ଆଦିବାସୀ-ମାନଙ୍କର ଜୀବନ ଧାରଣ ରୀତି ଅନୁଧ୍ୟାନ କରନ୍ତୁ ବୋଲି । ଫଳରେ ଆପଣ ଜାଣି ପାରିବେ, ଆମ ଭିତରୁ ଶତକଡ଼ା ୩୦ ଭାଗ ଲୋକ କିଭଳି କାଳାତିପାତ କରୁଛନ୍ତି ।

ମୁଁ କାମନା କରୁଛି, ମୋ ରାଜ୍ୟର ପ୍ରତ୍ୟେକ ନାଗରିକ ପାଖରେ ମୁଣ୍ଡ ଗୁଞ୍ଜିବାକୁ ବାସ ଥିବ । ସେ ନିରୋଳା ପାନୀୟ ଜଳ ପାଉଥିବ ତଥା ସବୁ ଦିଗରୁ ନିରାପଦତା ଲାଭ କରୁଥିବ । ସବୁ

ଚଳନଶୀଳ ରାସ୍ତା, ଦକ୍ଷ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଦ୍ୱାରା ପରିଚାଳିତ ସ୍କୁଲ ଏବଂ ଅଭିଜ୍ଞ ଡାକ୍ତର ଥିବା ଡାକ୍ତରଖାନା ସେମାନଙ୍କ ନିମନ୍ତେ ଉପଲବ୍ଧ ହେଉଥିବ । ଏ ସବୁର ସୁନିଶ୍ଚିତ ବ୍ୟବସ୍ଥା ମୋ ସ୍ୱପ୍ନର ଓଡ଼ିଶାରେ କରାଯାଇ ପାରିଥିବ । ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ ଦିଗରୁ ରାଜ୍ୟର କୌଣସି ଅଞ୍ଚଳ ଅବହେଳିତ ଅବସ୍ଥାରେ ନ ଥିବ । ଆଧୁନିକ ବିଜ୍ଞାନର ଦାନ ବୋଲି ଗଣା ଯାଉଥିବା ଟେଲିଫୋନ, ଇଲେକ୍ଟ୍ରୋନିକ୍ସ ଭଳି ସଞ୍ଚାର ବ୍ୟବସ୍ଥା ସବୁର ଉପଯୋଗ ଜଣେ ସାଧାରଣ ଗ୍ରାମବାସୀ ମଧ୍ୟ ସେତେବେଳେ କରି ପାରୁଥିବ ।

ଯେଉଁ ପ୍ରକୃତିଦତ୍ତ ଖଣିଜ ସମ୍ପଦ ଦ୍ୱାରା ଆମେ ଆଜି ସମୃଦ୍ଧ, ଆସନ୍ତା ଅନେକ ବର୍ଷ ନିମନ୍ତେ ତାହା ବହୁ ପ୍ରମୁଖ ଉଦ୍ୟୋଗକୁ ଚଳାଇ ରଖି ପାରିବ । ଇସ୍ପାତ ହେଉ, କୋଇଲାରୁ ବିଦ୍ୟୁତ ଶକ୍ତି ଉତ୍ପାଦନ ହେଉ, ଆଲୁମିନିୟମ ହେଉ, ତୈଳ ବିଶୋଧନାଗାର ହେଉ ବା ପେଟ୍ରୋ-କେମିକାଲ ଶିଳ୍ପ ହେଉ, ଏସବୁ ନିମନ୍ତେ କଞ୍ଚା ମାଲ୍‌ର ଅଭାବ ରହିବ ନାହିଁ । ଏସବୁ ଉଦ୍ୟୋଗକୁ ଆମେ ଚଳାଇ ପାରିବା । ପୃଥିବୀର ସବୁ ଅଞ୍ଚଳର ଲୋକଙ୍କ ପାଇଁ ଆମ ରାଜ୍ୟ ଆକର୍ଷଣୀୟ ହୋଇ ଉଠିବା ଅନିବାର୍ଯ୍ୟ ହୋଇ ଉଠିବ ।

ସାମ୍ପ୍ରତିକ ଭାରତରେ ସାମାଜିକ କ୍ଷେତ୍ରରେ ସମନ୍ୱୟତା ଦେଖା ଯାଉନାହିଁ । ଧାର୍ମିକ ଅସହିଷ୍ଣୁତା ଭରି ରହିଛି । ସହନଶୀଳ ଜାତି ପ୍ରଥା ନାହିଁ । ଏକଥା ନିଶ୍ଚିତ ଯେ, ଏତେ ପ୍ରକାରର ମତଭେଦକୁ ନେଇ କେବେ ସମୃଦ୍ଧି ପଥରେ ଆଗେଇ ହେବନାହିଁ । ତେଣୁ ମୋ ସ୍ୱପ୍ନର ଓଡ଼ିଶାରେ ଥିବ ମହାନୁଭବତା, ସାମ୍ୟତା, ଶୃଙ୍ଖଳା ସହନଶୀଳ ମନୋଭାବ ତଥା ପଡ଼ୋଶୀ ପଡ଼ୋଶୀ

ଭିତରେ ଭ୍ରାତୃତ୍ୱର ସଦ୍‌ଭାବ । ସେଠି କେହି କ୍ଷୁଦ୍ରତାର ଅଭିଶାପ ପାଇ ନଥିବେ କିମ୍ୱା ଅନ୍ୟତର ବିଜବପନ କରିବାକୁ କେହି ନଥିବେ ।

ଶେଷରେ ମନୀଷୀ ମାକ୍‌ସ୍ ମୁଲାର ବହୁବର୍ଷ ତଳେ କହିଥିବା ଗୋଟିଏ କଥାର ଅବତାରଣା ମୁଁ ଏଠି କରୁଛି । ସେ କହିଥିଲେ, "ସମଗ୍ର ପୃଥିବୀରେ ପ୍ରକୃତି ତାର ସବୁଠାରୁ ବେଶୀ ଆଶୀର୍ବାଦ କେଉଁ ଦେଶ ଉପରେ ଅଜାଡ଼ି ଦେଇଛି ବୋଲି ଯଦି ମୁଁ ଖୋଜି ବସେ, ତେବେ ଭାରତବର୍ଷ ହିଁ ମୋ ମାନସପଟରେ ଭାସି ଉଠିବ ।"

ତେବେ ଆମେ ସମସ୍ତେ ମିଶି ଓଡ଼ିଶା ରାଜ୍ୟକୁ ଏପରି ଗଢ଼ି ତୋଳିବା, ଯେମିତିକି ସାରା ପୃଥିବୀର ଲୋକେ କହି ଉଠିବେ ଯେ, 'ଓଡ଼ିଶା ହେଉଛି ଆମର ସ୍ୱପ୍ନର ରାଜ୍ୟ ।'

**—ବିଜୁ ପଟ୍ଟନାୟକ ଅମର ରହେ—**

# ଆମ୍ଭ ପ୍ରକାଶିତ ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

ଜଗତର ନାଥ ଶ୍ରୀଜଗନ୍ନାଥ
ଶ୍ରୀଜଗନ୍ନାଥଙ୍କ କାହାଣୀ ଓ କିମ୍ବଦନ୍ତୀ
ସାରଳା ମହାଭାରତର କାହାଣୀ ଓ କିମ୍ବଦନ୍ତୀ
ଭରଷାପୁ କାହାଣୀ ଓ କିମ୍ବଦନ୍ତୀ
ରାମାୟଣର କାହାଣୀ ଓ କିମ୍ବଦନ୍ତୀ
ମହାଭାରତର କାହାଣୀ ଓ କିମ୍ବଦନ୍ତୀ
ବେତାଳର ପଚିଶ କଥା
ସାତ୍ତ୍ୱିକ ଭକ୍ତ ମଧୁସୂଦନ
ଆଦିକବି ସାରଳା ଦାସ
ଅତିବଡ଼ୀ ଜଗନ୍ନାଥ ଦାସ
ମତ୍ତ ବଳରାମ ଦାସ
ଯୋଗର୍ଷି ଅଚ୍ୟୁତାନନ୍ଦ
ପଞ୍ଚସଖାର ଯଶୋବନ୍ତ ଓ ଅନନ୍ତ
ଜାତିର ମଣି ଉତ୍କଳମଣି
କବିଗୁରୁ ରାଧାନାଥ
ଭକ୍ତ କବି ଭକ୍ତଚରଣ
ସେନାପତି ଫକୀରମୋହନ
ପ୍ରକୃତି ପୁରୁଷ ଗଙ୍ଗାଧର
ପଲ୍ଲୀ ପ୍ରଭାତ ନନ୍ଦକିଶୋର
ବାଗ୍ମୀ ବିଶ୍ୱନାଥ କର
ସାଧକ କବି ଚନ୍ଦ୍ରମଣି ଦାସ
ବୁଢ଼ିଆ ମିଶ୍ରର ପହେଳିମାଳା
ଓଡ଼ିଶାର ଆଦିବାସୀ ସମାଜ